# ପ୍ରୟାସ

ଶ୍ରମିକ ସଂଗଠନ ହେଉ ବା କୃଷକ ସଂଗଠନ ହେଉ ଯେତେଦିନ ଯେଉଁଠାରେ କାର୍ଯ୍ୟ କରିଛି ସବୁଠାରେ ମାନବିକ ଅଧିକାର ଓ ମଣିଷପାଇଁ ମର୍ଯ୍ୟଦାବନ୍ତ ସ୍ଥିତିଟିଏ ଦାବୀକରି କାର୍ଯ୍ୟକରି ଆସିଛି । ସେମାନଙ୍କ ମଜୁରୀ ଅଧିକ ହେଉ, ସେମାନଙ୍କର ଜୀବନଶୈଳୀରେ ପରିବର୍ତ୍ତନ ଘଟୁ, ସେମାନଙ୍କୁ ସ୍ୱାସ୍ଥ୍ୟବୀମା, ଜୀବନ ବୀମାଭୁକ୍ତ କରାଯାଉ ଅଥବା ଏକ ମର୍ଯ୍ୟଦାବନ୍ତ ଅବସରକାଳୀନ ଭତ୍ତା ମିଳୁ ଆଦି ଦାବୀ ବାରମ୍ବାର ଉଠାଇ ଆସିଛି । ଏପରି ପ୍ରୟାସ ଜାରୀ ରଖିଛି । ଲଢ଼େଇ କରିଛି । ଯେଉଁ ଅଳ୍ପ ସମୟ ପାଇଁ ଯେଉଁ ଦାୟୀତ୍ୱ ପାଇଛି ତା'ର ସଦୁପଯୋଗ କରି ନିଜର ଦାୟିତ୍ୱ ସୀମା ଭିତରେ ଏହିସବୁ ପ୍ରୟାସକୁ ଚରିତାର୍ଥ କରିବାର ଉଦ୍ୟମ କରିଛି । କିଛି ଫଳ ଫଳିଛି । ଅନେକ ହାତଛଡ଼ା ହୋଇଛି । ସମୟ ସୁଯୋଗ ଦେଖି ସେ ସଂପର୍କରେ ଚେଷ୍ଟା କରିଛି । ହାସଲପାଇଁ କୌଶଳ ଓ କାର୍ଯ୍ୟକ୍ରମ ଜାହିର ରଖିଛି, ପ୍ରୟାସ ଜାହିର ରହିଛି । ମର୍ଯ୍ୟଦା, ମଜୁରୀ, ନିରାପତ୍ତା ନିମନ୍ତେ ସଂଗ୍ରାମ ଅବ୍ୟାହତ ରହିଛି ଓ ଚାଲୁ ରହିବ । ସାମାଜିକ ଓ ଅର୍ଥନୈତିକ ଆନ୍ଦୋଳନକୁ ଅଧିକ ଯୋରଦାର କରିବା ନିମନ୍ତେ ରଚିତ ପୁସ୍ତକ ଶ୍ରମିକ ଅନେକ ଭାବରେ ସାହାଯ୍ୟ କରିବ ।

- ପଞ୍ଚାନନ କାନୁନ୍‌ଗୋ

ପଞ୍ଚାନନ କାନୁନ୍‌ଗୋ

# ଗ୍ରାମୀଣ




ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍‌ସ ଆଣ୍ଡ୍ ପଲିସି

ମଧୁସୂଦନ ନଗର, ଏମ୍.-୭୧, ୟୁନିଟ୍-୪, ଭୁବନେଶ୍ୱର

ମୋ. ୦୬୭୪-୨୫୦୬୭୮୪, ୯୪୩୮୩୬୦୮୪୯

# ଶ୍ରମିକ

ପଞ୍ଚାନନ କାନୁନ୍‌ଗୋ

*ପ୍ରକାଶକ*

ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍‌ସ ଆଣ୍ଡ୍ ପଲିସି

ଏମ୍.-୭୧, ମଧୁସୂଦନ ନଗର, ୟୁନିଟ୍-୪, ଭୁବନେଶ୍ୱର

ମୋ. ୦୬୭୪-୨୫୦୬୭୮୪, ୯୪୩୮୩୬୦୮୪୯

*ପ୍ରକାଶ କାଳ :*

ମେ ପହିଲା - ୨୦୧୬

*ମୁଦ୍ରଣ :*

ପଦ୍ମା କମର୍ସିଆଲ୍ ସେଣ୍ଟର,

୪୨-ଏ, ମଧୁସୂଦନ ନଗର, ୟୁନିଟ୍-୪, ଭୁବନେଶ୍ୱର-୭୫୧୦୦୧



# SHRAMIK

**Panchanan Kanungo**

***Publisher :***

**Institute of Public Finance and Policy**

M-71, Madhusudan Nagar, Unit-4, Bhubaneswar

Mob. 9438360849

***Published :***

**May 1st - 2016**

***Printed by :***

**Padma Commercial Centre,**

42-A, Madhusudan Nagar,

Unit-4, Bhubaneswar-751001

# - ଉତ୍ସର୍ଗ -

ଆଜି ମାର୍ଚ୍ଚ ୧୦ ତାରିଖ - ଗୁରୁବାର । ପ୍ରାତଃଭ୍ରମଣ ସମୟରେ ଜଣେ ବ୍ୟକ୍ତି ସାଇକେଲ୍‌ରୁ ଓହ୍ଲାଇ ପାଖରେ ଛିଡ଼ା ହେଲେ । ଆରମ୍ଭ କଲେ - ସାର୍ ଆପଣଙ୍କୁ ଜାଣେ । ଆମ ପାଇଁ କିଛି କରନ୍ତୁ । ଦିନ ମଜୁରିଆ ଭାବେ ରିଜିଓନାଲ୍ କଲେଜରେ କାର୍ଯ୍ୟକରେ । କେନ୍ଦ୍ରୀୟ ସଂସ୍ଥା; କିନ୍ତୁ ଓଡ଼ିଶା ମଜୁରି ହାରରେ ଆମକୁ ମଜୁରି ମିଳୁଛି । ମାସକର ୨୬ ଦିନର ମଜୁରୀ ସବୁ କଟିକାଟି ଯାଇ ୪ ହଜାର ଟଙ୍କା ମିଳେନି । ଆମ ସମସ୍ୟା କେହି ବୁଝୁ ନାହାନ୍ତି ।

ଆଶ୍ଚର୍ଯ୍ୟ ହୋଇ ରହିଁଲି । କାଲି ରାତିରେ ଏମାନଙ୍କ ନିମନ୍ତେ ହୋଇଥିବା ଲେଖାସବୁ ସଜଡ଼ା ହୋଇଛି । ପ୍ରେସ୍‌କୁ ଯିବ । ମୋ ଭିତରେ ଥିବା ଏମାନଙ୍କ ପାଇଁ ଦରଦୀ ପଣିଆ ଆଉ ଆନ୍ତରିକତା ଏ କିପରି ଜାଣିଲେ । ତାଙ୍କ ପରିଚୟ ମାଗିନି । ଦୁଇ ବିପରୀତ ଦିଗରେ ଦୁହେଁ ଚାଲିଲୁ । ଭାବନା ଏକ ଯଥାର୍ଥ ମାନବାବାଦୀ ବ୍ୟବସ୍ଥାର ଆବଶ୍ୟକତା ଓ ରୂପାୟନ । ଅଗଣିତଙ୍କ ଭିତରେ ସେ ଜଣେ । ସେହି ଅପରିଚିତ ଶ୍ରମଜୀବୀଙ୍କ ଉଦ୍ଦେଶ୍ୟରେ ଏହି ବହିଟି ଉତ୍ସର୍ଗ କରୁଛି ।

(ଗଣଙ୍କ ପାଇଁ ଜଣଙ୍କ ହାତରେ ଦିଆଗଲା ।)

- ପଞ୍ଚାନନ କାନୁନ୍‌ଗୋ



# ସାରାଂଶ

ବ୍ୟବସ୍ଥାର ଅନେକ ରୂପ ସାମନାକୁ ଆସିଛି । ସାମନ୍ତବାଦୀ ବ୍ୟବସ୍ଥା (Feudalism), ଦେଶୀୟ ପୁଂଜିବାଦୀ ବ୍ୟବସ୍ଥା(National Capitalism), ଔପନିବେଶୀୟ ବ୍ୟବସ୍ଥା(Colonialism), ନବ ଔପନିବେଶବାଦ(Neo-Colonialism) ଆନ୍ତଃଦେଶୀୟ ପୁଞ୍ଜିବାଦ(Imperialism), ଉଦାରୀକରଣ(Liberalism), ଜଗତୀକରଣ (Globalisation) ଅଥବା ଅର୍ଥନୈତିକ ସୁଦ୍ଧିକରଣ (Corporatisation), ସମାଜବାଦୀ (Socialism) ଓ ନିୟନ୍ତ୍ରିତ ଅର୍ଥନୈତିକ ବ୍ୟବସ୍ଥା(Communism) ସବୁଥିରେ ଦୁଇ ସଂପ୍ରଦାୟର ଉପସ୍ଥିତି ସ୍ୱୀକାର କରିବାକୁ ହୋଇଥାଏ । ଗୋଟିଏ ପକ୍ଷରେ ଭୂମାଲିକ, ପୁଞ୍ଜିମାଲିକ, ନିୟନ୍ତ୍ରଣକାରୀ ଅନ୍ୟ ପକ୍ଷରେ ହଳିଆ, ମୂଲିଆ, ମଜୁରିଆ, ଖଟିଖିଆ, ସେବା ପ୍ରଦାନକାରୀ ଶ୍ରେଣୀ ଛିଡ଼ା ହୋଇଛନ୍ତି । ଏହି ଖଟିଖିଆ ଶ୍ରେଣୀ ଉତ୍ପାଦନର ସକ୍ରିୟ ମାଧମ ଓ ସମସ୍ତ ଉତ୍ପାଦନ ବା ପୁଞ୍ଜି ଠୁଳହୋଇ ଚାଲିଛି ମାଲିକ ହାତରେ, କିଛି ମୁଷ୍ଟିମେୟ ଗୋଷ୍ଠୀ ହାତରେ । ଏପରି ଏକ ସ୍ଥିତି ଉପୁଜିଛି ଯେଉଁଥିରେ ସମଗ୍ର ବିଶ୍ୱର ମାତ୍ର ୧୦ ପ୍ରତିଶତ ଲୋକଙ୍କ ହାତରେ ବିଶ୍ୱରେ ଥିବା ସମସ୍ତ ୫୦% ସମ୍ପତ୍ତି ଠୁଳ ହୋଇଥିବା ସମୟରେ ୯୦% ପ୍ରତିଶତଙ୍କ ହାତରେ ୫୦% ସଂପତ୍ତି ରହିଛି । ଯେଉଁ ଶ୍ରେଣୀ ବା ବର୍ଗ ଉତ୍ପାଦନର କାରଣ ସେମାନଙ୍କ ମଧରେ କିଛି ସଂଗଠିତ ଶ୍ରମିକଶ୍ରେଣୀ ଓ ଅନେକ ଅସଂଗଠିତ ଶ୍ରମଜୀବୀ ଭାବେ ରହି ଆସିଛନ୍ତି ଓ ଅସଂଗଠିତ ବର୍ଗ ଅନେକ ଭାବେ ବିକ୍ଷିପ୍ତ ଓ ବିଭାଜିତ । ଅସଂଗଠିତ ଶ୍ରମିକଙ୍କ ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ସେମାନଙ୍କର ସମସ୍ୟା ମଧ ବୃଦ୍ଧି ପାଇବାରେ ଲାଗିଛି । ସଂଗଠିତ ଶ୍ରମିକର ବହୁଦିନର ସଂଘବଦ୍ଧ ଆନ୍ଦୋଳନ ତାଙ୍କପାଇଁ କିଛି ଅଂଶରେ ରକ୍ଷାର କବଚ ଆଣି ଦେଇଛି । ସେମାନେ ଯେ ଶୋଷଣର ଶୀକାର ହେଉ ନାହାନ୍ତି ତା' ନୁହେଁ, କିନ୍ତୁ ସେମାନଙ୍କର ପ୍ରତିବାଦର ସ୍ୱର ଓ ଆନ୍ଦୋଳନ ତାଙ୍କୁ ସୁରକ୍ଷା ଦେଇ ଚାଲିଛି । ସମସ୍ତ ଅସଂଗଠିତ ଶ୍ରମିକଶ୍ରେଣୀ ଦୁଃଖ କଷ୍ଟରେ ଚିତ୍କାର କରି

ଚାଲିଛି । କ୍ଷଣ ସ୍ୱର, କାଁ ଭାଁ କର୍ଣ୍ଣଗୋଚର ହେଲେ ମାନବବାଦୀମାନେ 'ମାନବିକ ଅଧିକାର' ନାମରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥାନ୍ତି । ସେମାନଙ୍କ ମାନବିକ ଅଧିକାର ଉପରେ ପ୍ରସ୍ତାବ ଜାତୀୟ, ଅନ୍ତଃଜାତୀୟ ସ୍ତରରେ ଗୃହୀତ ହୁଏ । ଅନେକ ପ୍ରସ୍ତାବ କାର୍ଯ୍ୟକାରୀ ହେବା ସମୟକୁ ଡରଳି ଯାଇଥାଏ ।

ଯେଉଁଥିପାଇଁ ଦିନ ମଜୁରୀଆ, ସିଏ ଜମିର ଖଟିଖିଆ ମୂଲିଆ ହେଉ ଅବା ଖଣି ଖାଦାନର ଶ୍ରମିକ ହେଉ ଅବା ଦାଦନ ଶ୍ରମିକ ଆଉ ଗୋତି ଶ୍ରମିକ ହେଉ କିମ୍ବା ଘରେ, ଦୋକାନରେ ଖଟୁଥିବା ଶ୍ରମଜୀବୀ ହେଉ ସମସ୍ତେ ସାହାହୀନ ହୋଇ ଛଟପଟ ହୋଇଥାନ୍ତି । ଯେଉଁମାନଙ୍କ ସେବା ରହିତ ହେଲେ ବାବୁଭାୟାମାନେ ଛଟପଟ ହୋଇଥାନ୍ତି । ସେମାନେ ଘରର ବାସନ ମାଜୁଥିବା, ଘର ସଫାକରୁଥିବା, ସ୍ତ୍ରୀଲୋକ ହୁଅନ୍ତୁ, ରାସ୍ତାସଫା କରୁଥିବା ଶ୍ରମିକ ଶ୍ରେଣୀ ହୁଅନ୍ତୁ ବା ରିକ୍ସା, ଅଟୋରିକ୍ସା ଟାଣୁଥିବା ଚାଳକ ହୁଅନ୍ତୁ ସମସ୍ତେ ଏକ ମର୍ଯ୍ୟାଦାରହିତ ଜୀବନ ଯାପନ କରିଥାନ୍ତି ।

ସ୍ତ୍ରୀ ଲୋକଟିଏ ପ୍ରତିଦିନ ଘରସଫା କରିବାକୁ, ବାସନ ମାଜିବାକୁ ଆସିଥାଏ । ଦିନକରେ ଦୁଇଥର ଦୁଇଘଣ୍ଟା ଖଟେ ମାସକୁ ୮୦୦ ରୁ ୧୦୦୦ ଟଙ୍କା ପାଏ । ମାଲିକ ବିଚାରରେ ସେ ମାତ୍ର ଦି ଘଣ୍ଟା ଖଟି ୧୦୦୦ଟଙ୍କା ଦେଇଛି । ସେ ବୁଝି ପାରନ୍ତି ନାହିଁ ଯେ ତାଙ୍କ ଘରକୁ ଯିବା ଆସିବାପାଇଁ ତା' ବସ୍ତିରୁ ଅନ୍ୟୁନ ଏକଘଣ୍ଟା ବା ତଦୂର୍ଦ୍ଧ ସମୟ ଲାଗିଥାଏ ଓ ଯିବା ଆସିବା ବାବଦ କିଛି ଅର୍ଥ ବ୍ୟୟ କରିବାକୁ ହୋଇଥାଏ । କୋଉଦିନ ଯଦି ତା ହାତରେ ଭଙ୍ଗା କାଚ ବା କଣ୍ଟାପଶି ସେ ଆକ୍ରାନ୍ତ ହେଲା ତା'ର ଚିକିତ୍ସା ଖର୍ଚ୍ଚ କିଏ ଦିଏ ? ଅଧିକନ୍ତୁ ତାଙ୍କୁ ଅନୁପସ୍ଥିତିର ଗଂଜଣା ସହିବାକୁ ହୁଏ । ଟିକେ ଅଧିକ ଦିନ ରହିଗଲେ ପଇସା କଟେ । ଦିନକୁ ୪ଟି ଖଟଣୀ ଖଟିଲେ ସେ କେତେ ପାଏ ? ଜଣଙ୍କ ଘରେ ସେ ଜଣେ । ଏପରି ଅନେକ ଜଣ ଖଟୁଛନ୍ତି । କିନ୍ତୁ ସଂଗଠିତ ନୁହନ୍ତି କି ତାଙ୍କପାଇଁ ଉଦ୍ଦିଷ୍ଟ ସମସ୍ତ ବ୍ୟବସ୍ଥା ସଂପର୍କରେ ସଚେତନ ନୁହଁନ୍ତି ।

ଅସଂଗଠିତ ଶିଶୁଶ୍ରମିକର ଦୁଃଖ କହିଲେ ନ ସରେ । ଅନେକ ଭାବନ୍ତି ଆଇନ ହେତୁ ଶିଶୁ ଶ୍ରମିକ ଆଉ ନାହାନ୍ତି । ବାସ୍ତବ ସ୍ଥିତି ଅନ୍ୟ ଦୃଶ୍ୟପଟ ସାମନାରେ ଟେକିଧରେ । ଏହି ପୁସ୍ତକରେ ଅସଂଗଠିତ ଶ୍ରମିକ ଶ୍ରେଣୀ ସଂପର୍କରେ ସୂଚନା ଦିଆଯାଉଛି । ସେମାନଙ୍କ ପାଇଁ ଉଦ୍ଦିଷ୍ଟ ଆଇନ୍ ସଂପର୍କରେ ମଧ କୁହାଯାଇଛି । ଏହି

ସବୁ ଆଇନ କେତେ ସାହାଯ୍ୟକାରୀ ଓ କେତେ ପରିମାଣରେ ଆବଶ୍ୟକତା ପୂର୍ଣ୍ଣ-କରୁଛି ବା ସୀମିତ ସେ ସଂପର୍କରେ କୁହାଯାଇଛି ।

ଏହି ଶ୍ରେଣୀର ଶ୍ରମିକଙ୍କର ବାର୍ଦ୍ଧକ୍ୟକାଳୀନ ବା ଅବସରକାଳୀନ ସମୟର ବଞ୍ଚିବା ସମୟଗୁଡ଼ିକ କିପରି କଟେ ? ହାତପାତି ଅସହାୟ ଅବସ୍ଥାରେ ସମୟ କାଟିବାକୁ ହୁଏ । କାର୍ଯ୍ୟରତ ଥିବା ସମୟରେ ହେଉ ବା ଅବସର ନେବା ସମୟରେ ହେଉ, ସ୍ୱାସ୍ଥ୍ୟସେବାରୁ ବଞ୍ଚିତ ହେବା ସବୁବର୍ଗର ଅସଂଗଠିତ ଶ୍ରମିକ ଶ୍ରେଣୀପାଇଁ ବଡ଼ ଚିନ୍ତାର କାରଣ ହୋଇ ଦେଖାଯାଇଥାଏ ।

କ୍ରମାନ୍ୱୟ କ୍ରୟଶକ୍ତିର କ୍ଷୟ (Loss of Purchasing Power) ଅସଂଗଠିତ ଶ୍ରମିକବର୍ଗଙ୍କୁ ଦାରିଦ୍ର୍ୟ ଭିତରକୁ ବାରମ୍ବାର ଠେଲି ଦେଇଛି । ସେଥିରୁ ମୁକୁଳିବାର ରାହା ନାହିଁ । କ୍ରୟଶକ୍ତି କ୍ଷୟର ମୁଖ୍ୟ କାରଣ 'ମଜୁରୀ' ନିର୍ଦ୍ଧାରଣରେ ଅଯୌକ୍ତିକ ସିଦ୍ଧାନ୍ତ, ଅନିୟମିତ କାର୍ଯ୍ୟଦିବସ ଏବଂ ଦୈହିକ ଶକ୍ତିର ଅସାମର୍ଥ୍ୟ ଓ ଅପଚୟ । ଅଧିକନ୍ତୁ କୁଶଳୀ ବା ଉଚ୍ଚକୁଶଳୀ ନ ହୋଇଥିବାରୁ 'ଅଳ୍ପ ଉତ୍ପାଦନ' 'ଅଳ୍ପ ରୋଜଗାର' ଧାରା ଭିତରେ ତାକୁ ବଞ୍ଚିବାକୁ ହୁଏ ।

ଅସଂଗଠିତ ଶ୍ରମିକର ନେତା ନିର୍ଣ୍ଣୟ ଏକ ଦୁରୂହ ବ୍ୟାପାର । ମାନବିକ ଅଧିକାର କର୍ମୀ ସହାୟତା ନେବାକୁ ସେ ଅନେକ ସମୟରେ ଶ୍ରେୟଃ ମଣେ । କାରଣ ଶ୍ରମିକ ସଂଗଠନମାନେ ସଂଗଠିତ ଶ୍ରମିକ ଶ୍ରେଣୀ ସ୍ୱାର୍ଥରେ ଅଧିକ ସମୟ ଦେଇଥାନ୍ତି । ଶ୍ରମିକନେତା ବା ତାଙ୍କ ସଂଗଠନ ସରକାରୀ ଦପ୍ତର, କଳକାରଖାନା ଖଣି ଖାଦାନରେ ଠୁଳ ହୋଇଥିବା ଶ୍ରମିକମାନଙ୍କ ସ୍ୱାର୍ଥପାଇଁ ଲଢ଼ାଇ କରିବାରେ ଯେତେ ସମୟ ଦେଇଥାନ୍ତି ଅସଂଗଠିତ ଶ୍ରମିକଙ୍କ ସମସ୍ୟାକୁ ନେଇ ଲଢ଼ାଇ କରିବାର ସେପରି ମନନିବେଶ କରି ନଥାନ୍ତି ।

ସେବାକାରୀ, ଖଟିଖିଆ ମେହନତୀ ଜନଗଣଙ୍କୁ ସଂଗଠିତ କରି ସେମାନଙ୍କ ପାଇଁ ନ୍ୟାୟୋଚିତ ମଙ୍ଗଳକାରୀ ଆଇନ ଓ ଯୋଜନାଦାବୀ କରିବା ସବୁ ଚିନ୍ତାଶୀଳ ନାଗରିକଙ୍କ ପ୍ରମୁଖ ଦାୟିତ୍ୱ । ସମସ୍ତ ଜନମଙ୍ଗଳକାରୀ ରାଷ୍ଟ୍ର ଓ ଶାସକ ବର୍ଗ ମାନବିକ ଅଧିକାରକୁ (Human Rights) ଦୃଷ୍ଟିରେ ରଖି ଓ ସାମ୍ବିଧାନିକ ବ୍ୟବସ୍ଥା ତଥା ଆନ୍ତର୍ଜାତୀୟ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ନିମନ୍ତେ କାର୍ଯ୍ୟକରିବା ଉଚିତ୍ । ରେଳଷ୍ଟେସନ୍‌ର

କୁଲିର ନାମ ବଦଳାଇ ରେଳ ସହାୟକ ରଖାଗଲା । ତେବେ କ'ଣ ସେମାନଙ୍କ ମୁଣ୍ଡ ବୋଝର ଭାର କମିଗଲା ? ଅନେକ ଆର୍ଥିକ କଷ୍ଟରୁ ସେ ରକ୍ଷା ପାଇଗଲା କି ? ତା'ର ପରିଚୟ ହେଉଛି 'କୁଲି' । ସେ ମୂଲିଆ, ବୋଝିଆ, ମୋଟିଆ ଭାବେ କାର୍ଯ୍ୟକରି ଚାଲିଛି । ସେ ମର୍ଯ୍ୟାଦାପୂର୍ଣ୍ଣ ମଜୁରୀ ବା ମୂଲ ଚାହିଁଥାଏ ଓ ଏକ ମର୍ଯ୍ୟଦାପୂର୍ଣ୍ଣ ଜୀବନଯାପନ କରିବା ନିମନ୍ତେ ରୋଜଗାର ଚାହିଁଥାଏ । ନାଁ ବଦଳାଇବାର ପ୍ରହସନ ନକରି ଅବସ୍ଥା ଓ ବ୍ୟବସ୍ଥାର ପରିବର୍ତ୍ତନ ନିମନ୍ତେ କାର୍ଯ୍ୟ କରାଗଲେ ହୁଏତ ସେ ଆତ୍ମମର୍ଯ୍ୟାଦାର ସହ ବଞ୍ଚି ରହିବ ।

ଏଥି ସହିତ ଅସଂଗଠିତ ଶ୍ରମିକଙ୍କ ସମସ୍ୟାର ଛାୟାଚିତ୍ର ରଖାଯାଇଛି । ସମାଧାନର ସୂତ୍ର ମଧ୍ୟ ରହିଛି । ଜନମଙ୍ଗଳକାରୀ ରାଷ୍ଟ୍ର (Welfare State) ଏବଂ ସମସ୍ତ ମାନବଧର୍ମୀ ଚିନ୍ତାଶୀଳ ବ୍ୟକ୍ତିବୃନ୍ଦଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ନିର୍ଣ୍ଣୟ କରିବାର ସମ୍ଭାବନା ନେଇ ଆନୁସଙ୍ଗିକ ଉପସ୍ଥାପନା କରାଯାଇଛି ।

ଶ୍ରମିକ ଓ ସେବାକାରୀର, ଜାତି ନାହିଁ, ଧର୍ମନାହିଁ, ଦେଶ ନାହିଁ, ସେ କେବଳ ଶ୍ରମ ବଦଳରେ ରୋଜଗାର କରେ । ସେ ସେବା ବଦଳରେ ଅର୍ଥଦାବୀ କରେ । ତା'ର ପରିବାର ଅଛି, ସ୍ୱାସ୍ଥ୍ୟ ନିରାପତ୍ତା ଅଛି । ସେ ଅବସରକାଳୀନ ବଞ୍ଚିବାର ରାହା ଖୋଜିଥାଏ । ଅସଂଗଠିତ ବର୍ଗ ବ୍ୟାପକ କିନ୍ତୁ ବିକ୍ଷିପ୍ତ । ସଚେତନ କରିବା ଉଦ୍ଦେଶ୍ୟରେ ଯାହାସବୁ ଆବଶ୍ୟକ, ସେସବୁ କଥା ଦିଆଯାଇଥିବା ପ୍ରତ୍ୟେକଟି ଅଧ୍ୟାୟରେ ଅଛି । ଅଧିକ ତଥ୍ୟଭିତ୍ତିକ ନୁହେଁ । କାରଣ ତଥ୍ୟ ବଦଳି ଯାଇଥାଏ । ସମସ୍ୟା ଭିତ୍ତିକ ତଥା ସ୍ଥାନ-କାଳ-ପାତ୍ର ଅନୁସାରେ ସମସ୍ୟା ଓ ତା'ର ସମାଧାନର ସୂତ୍ର ନିର୍ଣ୍ଣୟ ନିମନ୍ତେ ଅଧ୍ୟାୟଗୁଡ଼ିକ ସଜଡ଼ାଯାଇଛି ।



# ସୂଚୀପତ୍ର





# ନିମ୍ନତମ ମଜୁରି ନିର୍ଦ୍ଧାରଣ କେତେ ବାସ୍ତବ କେତେ ଅବାସ୍ତବ

ବିଭିନ୍ନ ସମୟରେ ରାଜ୍ୟ ସରକାର ଦିନ ମଜୁରିଆଙ୍କ ପାଇଁ ଆଇନ ଅନୁମୋଦିତ (Minimum wage Act-1948) ସର୍ବନିମ୍ନ ମଜୁରୀ ହାରର ଘୋଷଣାନାମା ପ୍ରକାଶ କରିଥାନ୍ତି । ମଜୁରିର ପୁନଃ ନିର୍ଦ୍ଧାରଣ ସମୟରେ ଅଣକୁଶଳୀ, ଅର୍ଦ୍ଧକୁଶଳୀ, କୁଶଳୀ ଓ ଅତିକୁଶଳୀ ଶ୍ରମିକ ନିମନ୍ତେ ଭିନ୍ନ ଭିନ୍ନ ମଜୁରି ହାର ରଖାଯାଇଥାଏ ଏବଂ କେଉଁକାର୍ଯ୍ୟଗୁଡ଼ିକ ଏହିସବୁ ଶ୍ରେଣୀର ଅନ୍ତର୍ଭୁକ୍ତ ତା'ର ଏକ ସୁଚିନ୍ତିତ ତାଲିକା (Scheduled) ମଧ୍ୟ ପ୍ରକାଶ ପାଇଥାଏ ।

ସରକାରୀ ଘୋଷଣା ଅନୁସାରେ ଓଡ଼ିଶାରେ ନିମ୍ନତମ ମଜୁରି ଅଣକୁଶଳୀ କାରିଗର ପାଇଁ ୯/୨୦/୨୦୧୪ ମସିହାରୁ ୨୦୭.୦୫ ପଇସା ଧାର୍ଯ୍ୟ କରାଯାଇଛି, ଯେଉଁଥିରେ ଦୈନିକ ଟ.୨.୫୦ ହିସାବରେ ମହାର୍ଗଭତ୍ତା ଯୋଡ଼ାହୋଇ ରହିଛି । ଉଚ୍ଚ କୁଶଳୀ ଦିନ ମଜୁରୀଆଙ୍କ ପାଇଁ ନିମ୍ନତମ ମଜୁରି(High skilled) ଦୈନିକ ୨୬୦ଟଙ୍କା ଧାର୍ଯ୍ୟ କରାଯାଇଛି । ଗୋଟିଏ ଦୃଷ୍ଟିରୁ ବିଚାର କଲେ ଯଦି ଜଣେ ଦିନ ମଜୁରିଆ ମାସକୁ ହାରାହାରି ୨୦ଦିନ କାମ ପାଇବ ତେବେ ତା' ପରିବାର କେବେ ବି ଦାରିଦ୍ର୍ୟ ସୀମାରେଖା ଟପି ପାରିବ ନାହିଁ । ତା'ର ମାସିକ ଆୟ ଯଦି ୫ ହଜାର ୨୦୦ଟଙ୍କା ରୁହେ ଏବଂ ଆୟର ୬୦% କେବଳ ଖାଇବାରେ ଯାଏ ଯାହାକି ଦରିଦ୍ରତାର ଅନ୍ୟ ଏକ ମାପକ ତେବେ ପରିବାରର କେବଳ ଖାଦ୍ୟପାଇଁ ମାସିକ ବ୍ୟୟ ୩ ହଜାର ଟଙ୍କାହେବ । ବର୍ତ୍ତମାନ ପାଇଁ ଗ୍ରାମାଞ୍ଚଳ ନିମନ୍ତେ ସରକାରୀ ନିର୍ଦ୍ଧାରିତ ଦାରିଦ୍ର୍ୟ ସୀମାରେଖା ମୁଣ୍ଡପିଛା ଦୈନିକ ୨୮ଟଙ୍କା (ରଙ୍ଗରାଜନ କମିଟି ସୁପାରିଶ ମତେ) । ପାଞ୍ଚ ଜଣ ବିଶିଷ୍ଟ ପରିବାର ପାଇଁ ମାସିକ ଖର୍ଚ୍ଚ ୪୨୦୦ ଟଙ୍କା ହେଉଥିବାରୁ ୨୦୧୬ର ସ୍ଥିତି ଅନୁସାରେ ଦାରିଦ୍ର୍ୟ ସୀମାରେଖା ତଳକୁ ରହିବାକୁ ବାଧ୍ୟ । ଏପରିକି କୁଶଳୀ, ଅର୍ଦ୍ଧକୁଶଳୀ ଶ୍ରମଜୀବୀମାନେ ମଧ୍ୟ ସେହି ସମୟର (୨୦୧୬) ଦରକୁ ନେଇ ଦାରିଦ୍ର୍ୟ ସୀମାରେଖା ତଳେ ରହିବେ ।

ସଂଘୀୟ ବ୍ୟବସ୍ଥା ଅନୁସାରେ କେନ୍ଦ୍ର ଓ ରାଜ୍ୟମାନେ ଆଇନ ମୁତାବକ ନିଜ ନିଜର ମଜୁରି ଧାର୍ଯ୍ୟ କରିଥାନ୍ତି । ଓଡ଼ିଶାର ପଡୋଶୀ ରାଜ୍ୟ ପଶ୍ଚିମ ବଙ୍ଗରେ

କୃଷିକ୍ଷେତ୍ରରେ ଦୈନିକ ମଜୁରି ଟ୨୦୬.୦୦ । ସେହି ରାଜ୍ୟର ସବୁଠାରୁ କମ୍ ମିଳୁଥିବା ନିମ୍ନତମ ମଜୁରି ହାରରେ କାମ ଅନୁସାରେ ତାରତମ୍ୟ ଅଛି ଏବଂ ସର୍ବୋଚ୍ଚ ମଜୁରି ହେଉଛି ଟ୨୪୫.୦୦ । (୩୦ ଜୁନ୍ ୨୦୧୪) କୁଶଳୀ ଶ୍ରମିକ କ୍ଷେତ୍ରରେ ନିମ୍ନତମ ମଜୁରି କାର୍ଯ୍ୟ ବିଶେଷରେ ଦୈନିକ ଟ୨୪୯.୦୦ (କୃଷିକ୍ଷେତ୍ରରେ) ଠାରୁ ଆରମ୍ଭ କରି ୨୯୬ ଟଙ୍କା ପର୍ଯ୍ୟନ୍ତ ଧାର୍ଯ୍ୟ ହୋଇଛି । ଅତି କୁଶଳୀ ଶ୍ରମିକ କ୍ଷେତ୍ରରେ ଏହି ଦର ଟ୩୨୬.୦୦ ରଖା ଯାଇଥିଲା ।

ସେହିପରି ବିହାର କଥା ବିଚାର କରାଗଲେ ଦେଖାଯିବ ଯେ ୨୦୧୫ ଏପ୍ରିଲ ୧ ତାରିଖରେ ଅଣକୁଶଳୀ କାରିଗର ପାଇଁ ମଜୁରି ଟ୧୭୮.୦୦ ରୁ ୧୮୬ ଟଙ୍କା ଥିବାବେଳେ ଦୈନିକ ମହଙ୍ଗା ଭତ୍ତା ଟ୮.୦୦ ରଖାଯାଇଛି । ଉଚ୍ଚ କୁଶଳୀ ଶ୍ରମିକ କ୍ଷେତ୍ରରେ ମଜୁରି ଟ୨୯୦.୦୦ ରୁ ୩୦୧ ଟଙ୍କା ଭିତରେ ରହିଛି ଓ ମହଙ୍ଗାଭତ୍ତା ଟ୧୩ ରଖାଯାଇଛି ।

ଅନ୍ୟଏକ ପଡୋଶୀ ରାଜ୍ୟ ଆନ୍ଧ୍ରରେ (ମାର୍ଚ୍ଚ ୩୧, ୨୦୧୪) ଅଣ କୁଶଳୀ କାରିଗର ଦୈନିକ ମଜୁରି ଟ୨୫୦.୦୦ ଓ ମହଙ୍ଗାଭତ୍ତା ଦୈନିକ ହାରରେ ୭.୭୫ ଏହିପରି ମୋଟ ମାସକୁ ଟ୭୯୯୭.୨୬ ପଇସା ମିଳିଥାଏ । ଗୋଟିଏ ଉଚ୍ଚ କୁଶଳୀକୁ ମାସିକ ୧୨, ୨୪୭.୦୦ ଟଙ୍କା, କୁଶଳୀକୁ ୯୮୧୭.୫ଟଙ୍କା, ଅର୍ଦ୍ଧ କୁଶଳୀକୁ ୭୯୯୭.୨୫ ପଇସା ମାସକୁ ମିଳିଥାଏ । ଏହି ହାର ମଧ୍ୟ ତେଲେଙ୍ଗାନାରେ ମିଳୁଛି । ଛତିଶଗଡ଼ରେ ୨୦୧୫ରେ ଦୈନିକ ସର୍ବନିମ୍ନ ଟ.୨୨୨.୦୦ ମଜୁରି ଜଣେ ଅଣକୁଶଳୀ ଶ୍ରମିକ ପାଇଥାଏ । ଏହି ମଜୁରିହାର ଗୁଜୁରାଟରେ ୨୮୨ ଟଙ୍କାରୁ ଆରମ୍ଭ ହୋଇ ଅତି କୁଶଳୀ କ୍ଷେତ୍ରରେ ୩୦୩ ଟଙ୍କା ଦିଆ ଯାଇଥାଏ ଓ ମଧ୍ୟପ୍ରଦେଶରେ ଅଣକୁଶଳୀ ପାଇଁ ସର୍ବନିମ୍ନ ୨୩୯ ଟଙ୍କା ଥିବାବେଳେ ଅତିକୁଶଳୀପାଇଁ ୩୮୫ ଟଙ୍କା ଦୈନିକ ଦିଆଯାଇଥାଏ । ଝାଡ଼ଖଣ୍ଡରେ ମଧ୍ୟ ମଜୁରି ହାର ଓଡ଼ିଶାଠାରୁ ଉଚ୍ଚରେ । କେନ୍ଦ୍ର ସରକାର ନିଜର କେନ୍ଦ୍ରୀୟ ଆଇନ ବଳରେ ମଜୁରି ଧାର୍ଯ୍ୟ କରିଥାନ୍ତି । ଏହା ଅନେକ ସମୟରେ ରାଜ୍ୟମାନଙ୍କ ଧାର୍ଯ୍ୟ ହାରଠାରୁ କମ୍ ଥିବାର ଦେଖାଯାଇଥାଏ । ଗତ ଜୁଲାଇ (୨୦୧୫) ମାସଠାରୁ ନିମ୍ନତମ ମଜୁରିହାର ୧୩୭ ଟଙ୍କାରୁ ୧୬୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏପରି କେତେକ ରାଜ୍ୟ ଅଛି ଯେଉଁଠି ଅଣକୁଶଳୀ ମଜୁରିଆ ମାସସାରା କାମ ପାଇଲେ ୮ ହଜାର ଟଙ୍କାରୁ ୯ ହଜାର ଟଙ୍କା ମଧ୍ୟରେ ରୋଜଗାର କରିଥାନ୍ତି । ଏହି ସମସ୍ତ ରାଜ୍ୟ ହେଲେ ଗୋଆ, ସିକିମ୍, ଚଣ୍ଡିଗଡ଼, ଦିଲ୍ଲୀ, ପଣ୍ଡିଚେରୀ, ମହାରାଷ୍ଟ୍ର ।

ରାଜ୍ୟମାନଙ୍କର ଓ କେନ୍ଦ୍ରୀୟ ମଜୁରି ହାରରେ ଥିବା ତଫାତ୍ ସମସ୍ତଙ୍କୁ ଚକିତ କରିଥାଏ । କେଉଁ ଆଧାରରେ ଏମାନେ ମଜୁରୀ ନିର୍ଦ୍ଧାରଣ କରନ୍ତି ଜଣା ପଡ଼େ ନାହିଁ । ଭାରତର ଶ୍ରମ କମିଶନ ୧୯୫୭ ମସିହା ୧୫ତମ ଶ୍ରମ ଅଧିବେଶନରେ ଯେଉଁ ମାପକ ଧାର୍ଯ୍ୟ କରିଥିଲେ ତାହା ହେଉଛି ଜଣକ ପିଛା ୨୭୦୦ କିଲୋ କ୍ୟାଲୋରୀର ଖାଦ୍ୟ । ମୋଟ ତିନିଜଣଙ୍କ ପାଇଁ ୮୧୦୦ କିଲୋ କ୍ୟାଲୋରୀ । ବର୍ଷକୁ ୭୨ ଗଜ କପଡ଼ାର ଧାର୍ଯ୍ୟ କରିବାକୁ ସ୍ଥିର ହୋଇଥିଲା । କିନ୍ତୁ ୧୯୯୨ ମସିହାରେ ମାନ୍ୟବର ସୁପ୍ରିମକୋର୍ଟଙ୍କର 'ମଜୁରି' ସଂପର୍କୀତ ନିର୍ଦ୍ଦେଶ ଓ ପରେ ପରେ ସଂବିଧାନର ୨୧ତମ ସଂଶୋଧନ କରାଯାଇ ସମସ୍ତଙ୍କ ନିମନ୍ତେ ସମ୍ମାନଜନକ ଜୀବନ ଧାରଣ (Life with dignity) କଥା ଆସିବା ପରେ ଏକ ନୂତନ ମାନ ନିର୍ଦ୍ଧାରଣ କରାଯାଇ ମଜୁରିଧାର୍ଯ୍ୟ ହେବାର କଥା । ଯେଉଁଥିରେ ବାସସ୍ଥାନର ରକ୍ଷଣାବେକ୍ଷଣ, ଶିକ୍ଷା, ସ୍ୱାସ୍ଥ୍ୟ, ଶିଶୁ ଓ ମହିଳାଙ୍କ ପ୍ରତି ଦୃଷ୍ଟି ଓ ସାମାଜିକ ଆବଶ୍ୟକତା ସହିତ ଯାତାୟତ ଖର୍ଚ୍ଚ ମଧ ମିଶିବାର ଅଛି । ଖାଦ୍ୟର ସଂଜ୍ଞାମଧ ବଦଳିଛି । ସମସ୍ତେ ଜାଣିଲେ ଆଶ୍ଚର୍ଯ୍ୟହେବେ ଯେ ଇଂରେଜ ଶାସନକାଳରେ ଦାଦାଭାଇ ନାରୋଜୀ ଗୋଟିଏ ଶ୍ରମିକର ଦୈନିକ ଆବଶ୍ୟକତାକୁ ନେଇ ଯେଉଁ ଆକଳନ କରିଥିଲେ ଆଜିର ଦିନରେ ତାହା ଯଦି କାର୍ଯ୍ୟକାରୀ କରାଯାଏ ଦୈନିକ ମଜୁରିଆର କେବେହେଲେ ବି ୫୦୦ ଟଙ୍କାରୁ କମ୍ ହେବ ନାହିଁ । ଅର୍ଥାତ୍ ମାସିକ ଆୟ ୧୫ ହଜାରରୁ କେବେ କମ୍ ହେବ ନାହିଁ ।

ମଜୁରିର ସମସ୍ତ ଦିଗଗୁଡ଼ିକୁ ଆଲୋଚନା କରି ମଜୁରି ନିର୍ଦ୍ଧାରଣକାରୀମାନେ ପ୍ରଥମେ ବୁଝିବା ଦରକାର ଯେ ମଜୁରିର ଅର୍ଥଟି କ'ଣ ? ବିଭିନ୍ନ ଆଇନରେ ଏହାର ରୂପରେଖ କିପରି ପ୍ରଦତ୍ତ ହୋଇଅଛି ?

ନିର୍ଦ୍ଦିଷ୍ଟ ଉତ୍ପାଦନ ବା ସମୟର ଖଟଣି (work) ବା ସେବା (Service) ବଦଳରେ ଯାହା ମିଳିବାର କଥା ତାହାହିଁ ମଜୁରି ।

ସଂଜ୍ଞାଟି ଅତି ଛୋଟ ହେଲେ ମଧ ବିଷୟର ଆଲୋଚନା ଦୃଷ୍ଟିରୁ ଅତି ବ୍ୟାପକ । ଏଥିରେ ତିନୋଟି ଉପ ବିଭାଗ ରହିଛି ।

ପ୍ରଥମତଃ - ନିର୍ଦ୍ଦିଷ୍ଟ ଉତ୍ପାଦନ ବା ସମୟ

ଦ୍ୱିତୀୟତଃ - ଖଟଣି ବା ସେବା

ତୃତୀୟତଃ - ଯାହା ମିଳିବାର କଥା ।

ପ୍ରଥମ କଥାଟି ହେଉଛି ଉତ୍ପାଦନ ଭିତ୍ତିକ ବା ସମୟ ଭିତ୍ତିକ ମଜୁରୀ । ଏହି

ଅନୁସାରେ ଶ୍ରମିକକୁ Piece rated worker (ପୂରଣ ଶ୍ରମିକ) ବା Time rated worker (ସମୟ ଭିତ୍ତିକ ଶ୍ରମିକ) ଭାବରେ ଚିହ୍ନିତ କରାଯାଇଥାଏ ।

ଠିକା ଶ୍ରମିକ କେତେ ଘଣ୍ଟାର ଶ୍ରମ ଦେଲା ହିସାବକୁ ନିଆଯାଏ ନାହିଁ । କେତେ ପରିମାଣର ଉତ୍ପାଦନ ଦେଲା ତା'ର ହିସାବ କରାଯାଏ । ମାଟି ଖୋଳାଳୀ ହଜାରେ କ୍ୟୁବିକ ଫୁଟ ମାଟି ଖୋଳିଥିଲେ ସେହି ହିସାବରେ ମଜୁରୀ ନେଇଥାଏ ବା ପଥର କଟାଳୀ କେତେ ପଥର (ସାଇଜ୍ ଅନୁସାରେ) କାଟିଥାଏ ତା'ର ହିସାବରେ ପାରିଶ୍ରମିକ ସ୍ଥିର ହୁଏ । ସବୁକ୍ଷେତ୍ରରେ ଏହାର ପ୍ରଚଳନ ହୋଇ ପାରିବ । କିନ୍ତୁ ଏହା ଶ୍ରମିକର ସ୍ୱାର୍ଥଠାରୁ ମାଲିକର ସ୍ୱାର୍ଥ ରକ୍ଷା ଦିଗରେ ବିଶେଷ ବ୍ୟବହୃତ ହେବାରୁ ଏବଂ ସେବା ମୂଳକ କାର୍ଯ୍ୟ (Service) ତଥା ଉତ୍ପାଦନରେ ପରୋକ୍ଷ ସହାୟତା କରୁଥିବା କାର୍ଯ୍ୟର ମୂଲ୍ୟ ନିର୍ଦ୍ଧାରଣ କରିବାରେ ଅସୁବିଧା ଉପୁଜିବାରୁ 'ଠିକା ଶ୍ରମ' ବ୍ୟବସ୍ଥାଟି ଗୌଣ ହୋଇଯାଇ କ୍ଷେତ୍ର ବିଶେଷରେ ପ୍ରୋତ୍ସାହନ ମଜୁରୀ (Incentive wage) ବା ଉତ୍ପାଦିକାବୃଦ୍ଧି (Productivity) ନିର୍ଦ୍ଧାରଣରେ ସହାୟତା କରିଥାଏ । ତଥାପି ଲାଭଖୋର ମାଲିକ ଶ୍ରେଣୀ ଏହି ଅବ୍ୟବସ୍ଥାଟିକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ବ୍ୟବହାର କରିବାରେ ସତତ ଚେଷ୍ଟିତ ।

ସମୟ ଭିତ୍ତିକ (Time rated) ବ୍ୟବସ୍ଥା ଭିତରେ ସମୟ ଅନୁସାରେ ଶ୍ରମିକ ଚିହ୍ନିତ ହୋଇଥାଏ । ଏହା ସହିତ ଶ୍ରମ ଦିବସର ଘଣ୍ଟା ମଧ୍ୟ ଧାର୍ଯ୍ୟ ହୋଇଛି । ପୁଞ୍ଜିବାଦୀ ଦୁନିଆର ଲାଭଖୋରୀ ପ୍ରବୃତ୍ତି ମଣିଷକୁ ଖଟେଇ ଖଟେଇ ମୁନାଫା ବୃଦ୍ଧିରେ ଯେପରି ବ୍ୟସ୍ତ, ଖଟୁଥିବା ମଣିଷଟି ମଧ୍ୟ ନିଜର ଆବଶ୍ୟକତା ପୂରଣ ପାଇଁ ଅତିଶୟ ଆଗ୍ରହାସକ୍ତ ମୁକ୍ତହୋଇ ଅଧିକ ଖଟିଥାଏ । କିନ୍ତୁ ମଣିଷ ଭିତରେ ଥିବା ଯନ୍ତ୍ରଟି ଆଗ୍ରହାସକ୍ତ ବା ମାଲିକର ଲାଭ-ରାକ୍ଷସର ଇଚ୍ଛାକୁ ବହୁ ସମୟଧରି ପୂରଣ କରିବାକୁ ସକ୍ଷମ ହୁଏନାହିଁ । ଏ ସମସ୍ତ ଆଖି ଆଗରେ ରଖି ମଣିଷ ଖଟଣିର ସମୟ ଧାର୍ଯ୍ୟ ହୋଇଛି ଆନ୍ତର୍ଜାତୀୟ ସ୍ତରରେ ଓ ଆଇନଗତ ଭାବେ ସ୍ୱୀକାର କରି ନିଆ ଯାଇଅଛି । ଦିନକରେ ଅବସର ସହିତ, ଆଠଘଣ୍ଟା ଖଟଣି ସମୟ ଧାର୍ଯ୍ୟ ହୋଇଛି । ଏହି ଖଟଣି ପାଇଁ ଯେଉଁ ମଜୁରୀ ଧାର୍ଯ୍ୟ ହୋଇଛି ତାକୁ ଦୈନିକ ମଜୁରି (Daily wage) ଏବଂ ଖଟଣି ସମୟ ଭିତ୍ତିକ ଦିନକୁ (Labour day) ଶ୍ରମଦିବସ ବୋଲି କୁହାଯାଇଥାଏ ।

ଯେଉଁଠାରେ ଲଗାତର କାମର ଆବଶ୍ୟକତା ନଥାଏ ସେଠାରେ ଏହି ଦିନ ମଜୁରିଆ ଖଟାଯାଇ ଲକ୍ଷ୍ୟ ହାସଲ କରାଯାଏ । ଏହି ଶ୍ରେଣୀର ଶ୍ରମିକକୁ ଅସ୍ଥାୟୀ

ଶ୍ରମିକ (Casual worker) ବୋଲି କୁହାଯାଏ । ଏବେ ଦେଖାଯାଉଛି ଯେ ଲଗାତର କାର୍ଯ୍ୟଥିଲେ ମଧ୍ୟ ଶ୍ରମିକ, କର୍ମଚାରୀମାନେ ଏକ ବନ୍ଧିତ ଦରମା (Condsolidated pay) ନେଇ ଖଟୁଛନ୍ତି ଯେଉଁଥିରେ ଶ୍ରମିକର ନିରାପତ୍ତା ବହୁଭାବରେ କ୍ଷୁଣ୍ଣ ହୋଇଥାଏ ।

ମୂଲିଆଙ୍କର ମଜୁରି ନିର୍ଦ୍ଧାରଣ କାଳରେ ଦେଖାଗଲା ଯେ ସେହିସବୁ ମଜୁରି ବଜାରରେ ଅଧିକ ଅଛି । ସହରାଞ୍ଚଳ କେବଳ ନୁହେଁ ଗାଁମାନଙ୍କରେ ଗୋଟିଏ ମଜୁରିଆର ମଜୁରି ଟ ୨ ୦ ୦ ରୁ କମ୍ ନୁହେଁ । କାଁ ଭାଁ କେଉଁଠି ଏହି ମଜୁରି ଶସ୍ତା ଥାଇପାରେ ମାତ୍ର ସହରାଞ୍ଚଳ ଓ ତା'ର ପାଖାପାଖି ଗ୍ରାମାଞ୍ଚଳରେ ଏହି ଦର ଉଚ୍ଚତର ଅଛି । ମହାତ୍ମାଗାନ୍ଧି ଜାତୀୟ ନିଶ୍ଚିତ କର୍ମ ଯୋଜନାର ଉପରେ ଗାଁ ମଜୁରିଆର ମୂଲରେ ବୃଦ୍ଧି ଘଟିଛି । ସେଇଥିପାଇଁ ମଜୁରୀ ବୃଦ୍ଧି କାଳରେ ଯେଉଁପରିଭାବେ ପ୍ରତିକ୍ରିୟା ପ୍ରକାଶ ପାଇଥାଏ ତାହା ଘଟିଲା ନାହିଁ । ନବେ ଦଶକର ପ୍ରଥମ ଭାଗରେ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ସମୟରେ ହଠାତ୍ ମଜୁରି ୧ ୧ ଟଙ୍କାରୁ ୨ ୫ ଟଙ୍କାକୁ ବୃଦ୍ଧି ପାଇଲା । ସେତେବେଳେ ସାଧାରଣରୁ ଅନେକ ପ୍ରତିବାଦର ସ୍ୱର ଶୁଣିବାକୁ ମିଳିଥିଲା ଓ ସମ୍ବାଦପତ୍ରମାନଙ୍କରେ ଅନେକ ସମାଲୋଚନା ପ୍ରକାଶ ପାଇଥିଲା । ପରବର୍ତ୍ତୀ ମଜୁରି ବୃଦ୍ଧି ବେଳେ ତାହା ଘଟିଲା ନାହିଁ ।

ଅଞ୍ଚଳ ଅଞ୍ଚଳ ମଧ୍ୟରେ ମଜୁରିର ତାରତମ୍ୟ ରହିଲେ ଶ୍ରମିକ ଅଧିକ ମଜୁରି ଆଶାରେ ଅଧିକ ଅର୍ଜନ ପାଇଁ ଅନ୍ୟତ୍ର ଯାଇଥାଏ । ଯେଉଁଥିପାଇଁ ସ୍ଥାନାନ୍ତର ଶ୍ରମିକ (Migrant Labour)ସମସ୍ୟା ସୃଷ୍ଟି ହୋଇଥାଏ ଓ ରାଜ୍ୟ ରାଜ୍ୟ ମଧ୍ୟରେ ମଜୁରିର ତାରତମ୍ୟ ରହିଲେ ବା ରାଜ୍ୟ ମଧ୍ୟରେ ଲଗାତର କାମ ମିଳିବାର ଆଶା ନ ଥିଲେ ଶ୍ରମିକ ଶ୍ରେଣୀ ଦାଦନ ଖଟିବାକୁ ଯାଇଥାଏ । ମଜୁରି ନିର୍ଦ୍ଧାରଣ କରିବାବେଳେ ଏ ଦିଗଟି ପ୍ରତି ଧ୍ୟାନ ରହିବା ଦରକାର ।



# ଶିଶୁ ଶ୍ରମିକ ସମସ୍ୟା ଓ ତାର ସମାଧାନ

ପ୍ରତ୍ୟେକ ଦିନ ସହରର ପ୍ରାତଃ ଭ୍ରମଣକାରୀମାନେ ଦେଖୁଛନ୍ତି ଛୋଟ ଛୋଟ ପିଲା କାନ୍ଧରେ ଗୋଟିଏ ଗୋଟିଏ ଥଳି ଝୁଲାଇ ନାଳ ନର୍ଦ୍ଦମା ଓ ପାଖ ଦୋକାନ ବଜାର ନିକଟରେ ଛରି, ଟିଣ, ମଦବୋତଲ ଗୋଟାଉଛନ୍ତି । ବିଋରପତିମାନେ ଦେଖୁଛନ୍ତି ରାସ୍ତାକଡ଼ରେ ଛୁଆମାନେ ଖରାରେ ବସି ଜୋତା ପଲିସ୍ କରୁଛନ୍ତି । ସେମାନେ ଓକିଲାତି ଜୀବନ ଆରମ୍ଭ କଲାବେଳେ ଏମାନଙ୍କ ପାଖରେ ଯୋତା ଦେଖାଇ ଚିକ୍ ଚିକ୍ କରୁଥିବେ । ବଡ଼ କୁହାଳିଆ ଶ୍ରମିକ ନେତାମାନେ ଦେଖୁଛନ୍ତି ପଥପ୍ରାନ୍ତ ଢାବା, ଋ ଦୋକାନ, ଛୋଟ ହୋଟେଲରେ ଯିଏ ବାସନ ମାଜୁଛି ବା ତାଙ୍କ ନିଜ ଘରେ ଖାଦ୍ୟ ପରଶୁଛି, ବନ୍ଧୁବାନ୍ଧବଙ୍କ ଘରେ ଯିଏ କାମ କରୁଛି ସେ ସମସ୍ତେ ଅପ୍ରାପ୍ତ ବୟସର । ଅତିବେଶି ହେଲେ ଚୌଦବର୍ଷ ପାଖାପାଖି ହେବେ ।

ଭାରତୀୟ ସଂବିଧାନ ଧାରା ୩୯(ଙ), ଧାରା ୩୯(ଚ) ଧାରା ୪୫ ଓ ଧାରା ୪୭ରେ ୧୪ବର୍ଷରୁ କମ୍ ଶିଶୁକୁ କଳକାରଖାନାରେ ଖଟାଯାଇ ପାରିବ ନାହିଁ ବୋଲି କୁହାଯାଇଛି । ଶିଶୁ ଶ୍ରମିକମାନଙ୍କର ସ୍ୱାସ୍ଥ୍ୟ ଓ ଶକ୍ତି ସାମର୍ଥ୍ୟର ଯେପରି ଅପବ୍ୟବହାର ହେବନାହିଁ ତାହାକୁ ଦୃଷ୍ଟିରେ ରଖି ଶିଶୁ ଶ୍ରମିକ ଆଇନ ୧୯୮୬ ମସିହାରେ ପ୍ରଣୟନ କରାଯାଇଛି । ବିପଦସଂକୁଳ କ୍ଷେତ୍ର ଚିହ୍ନଟ କରାଯାଇ ୭୨ରୁ ଊର୍ଦ୍ଧ୍ୱ କର୍ମକ୍ଷେତ୍ରରେ ଶିଶୁ ଶ୍ରମିକ ଯେପରି ନ ରୁହନ୍ତି ସେଥିପ୍ରତି ଆଇନ୍‌ରେ ସତର୍କ କରି ଦିଆଯାଇଛି ।

ଶିଶୁ ଶ୍ରମିକମାନଙ୍କ ସଂପର୍କରେ ପ୍ରଣୀତ ଅନେକ ଆଇନ୍‌ରେ ସତର୍କ ସୂଚନାମାନ ଦିଆଯାଇଛି । ଫ୍ୟାକ୍ଟରୀ ଆକ୍ଟ ୧୯୪୮ରେ ପ୍ରଣୀତ ହୋଇ କୁହାଗଲା ଯେ ୧୪ବର୍ଷରୁ କମ୍ କୌଣସି ଶିଶୁକୁ କଳକାରଖାନା (Factory) ରେ ନିଯୁକ୍ତ ଦେବା ସଂପୂର୍ଣ୍ଣ ବନ୍ଦ । ଯଦିଓ ଏହି ଆଇନ ଧାରା ୬୮ରେ କୁହାଗଲା ଯେ ୧୮ବର୍ଷ ପର୍ଯ୍ୟନ୍ତ ଯେ କେହି ଡାକ୍ତର ଠାରୁ କ୍ଷମତାର(Fitness) ପ୍ରମାଣ ପତ୍ର ଆଣିଲେ କାର୍ଯ୍ୟ କରିପାରିବ । ଅନ୍ୟ କେତେକ ସର୍ତ୍ତ ହେଲା ଏହିପରି ନିଯୁକ୍ତି ଦେଲେ ଶ୍ରମିକଟି ସାଢ଼େ ୪ଘଣ୍ଟାରୁ ଅଧିକ କାର୍ଯ୍ୟ କରିବ ନାହିଁ । ଏହି ଆଇନର ଧାରା (Sec.) ୭୧, ୭୨, ୭୩, ୭୯ରେ ଶିଶୁର ସୁରକ୍ଷା ପାଇଁ ଅନେକ ସର୍ତ୍ତ ରଖାଯାଇଛି ।

ସର୍ବନିମ୍ନ ମଜୁରି ଆଇନ ୧୯୪୮ରେ ମଧ୍ୟ ସର୍ବନିମ୍ନ ୧୮ବର୍ଷ ପର୍ଯ୍ୟନ୍ତ ବୟସର ଶ୍ରମିକ ପାଇଁ ଉପଯୁକ୍ତ ମଜୁରି ନିର୍ଦ୍ଧାରଣ କରିବା କଥା କୁହାଯାଇଛି ।

ପ୍ଲାଣ୍ଟେସନ୍ ଲେବର ଆକ୍ଟ ୧୯୫୧ରେ ଶିଶୁ ଶ୍ରମିକ, କିଶୋର ଶ୍ରମିକର ବୟସ ଯଥାକ୍ରମେ ୧୪ ବର୍ଷ ଓ ୧୮ବର୍ଷ ବୋଲି ସୂଚିତ ହୋଇଛି । ଏହି ଆଇନ୍‌ରେ ମଧ୍ୟ ଶିଶୁ ଓ କିଶୋରମାନଙ୍କୁ ନିଯୁକ୍ତି ଦେବାର ଅନେକ ସର୍ତ୍ତ ରଖାଯାଇଛି । ଏହି ସର୍ତ୍ତ ଭଙ୍ଗକଲେ ୩ ମାସ ପର୍ଯ୍ୟନ୍ତ ଜେଲ ଦଣ୍ଡ ଓ ଏକ ହଜାର ଟଙ୍କା ପର୍ଯ୍ୟନ୍ତ ଜୋରିମାନାର ବ୍ୟବସ୍ଥା ରହିଛି ।

ଖଣିଖାଦାନ ଶ୍ରମିକମାନଙ୍କ ପାଇଁ ମାଇନସ୍ ଆକ୍ଟ ୧୯୫୨ରେ ନାନା କଟକଣା ସୂଚନା ଦିଆଯାଇଛି । ଏହି ଆଇନରେ କୁହାଯାଇଛି କେବଳ ଶିକ୍ଷାନବୀଶଙ୍କ (Aprentices)ଙ୍କ ବ୍ୟତୀତ କୌଣସି ଶିଶୁ ଓ କିଶୋରକୁ ନିଯୁକ୍ତି ଦିଆଯାଇ ପାରିବ ନାହିଁ । ଏହି ଶିକ୍ଷାନବିସ୍ ମାନଙ୍କର ବୟସ ୧୬ ବର୍ଷରୁ ଅଧିକ ହୋଇଥିବା ଦରକାର ।

ମୋଟର ଟ୍ରାନ୍‌ସପୋର୍ଟ ଆଇନ୍ ୧୯୬୧ରେ ମଧ୍ୟ ଶିଶୁ ଓ କିଶୋର ମାନଙ୍କୁ ନିଯୁକ୍ତ କଲାବେଳେ ଅନେକ କଟକଣାର ବ୍ୟବସ୍ଥା ରହିଛି । ଏହି ସର୍ତ୍ତସବୁ ଭଙ୍ଗକଲେ, ଗୋଟିଏ ମାସ ଦଣ୍ଡିତ ହେବାର ବ୍ୟବସ୍ଥା ରହିଛି । ଦୋକାନ ଓ ବିକ୍ରୀପାଇଁ ଖୋଲା ବଜାର ସଂସ୍ଥାମାନଙ୍କରେ ଶିଶୁ ଓ କିଶୋର ନିଯୁକ୍ତିକୁ ନିୟନ୍ତ୍ରଣ କରିବା ପାଇଁ ଗୋଟିଏ ଆଇନ୍ (The shops and establishment Act.)ପ୍ରଣୟନ କରାଯାଇଛି । ଏଥିରେ ଶିଶୁ ସେହି ସଂସ୍ଥାଟି ତାଙ୍କ ପରିବରର ହୋଇଥିଲେ ମଧ୍ୟ ସେଠାରେ କାର୍ଯ୍ୟ କରିବାକୁ ମନା ଅଛି । କିଶୋରଟିଏ ଏହିସବୁ ସଂସ୍ଥାରେ କାର୍ଯ୍ୟକଲେ ମଧ୍ୟ ରାତ୍ରକାଳରେ ଆଦୌ କାର୍ଯ୍ୟ କରିବା ଉଚିତ୍ ନୁହେଁ ବୋଲି କୁହାଯାଇଛି ।

କେତେକ ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ଶିଶୁ ବା କିଶୋରକୁ କାର୍ଯ୍ୟ କରିବାକୁ ମନା କରାଯାଇଛି । ବିଡ଼ି, ସିଗାରେଟ୍ ପ୍ରସ୍ତୁତ କାର୍ଯ୍ୟରେ ଶିଶୁ ବା କିଶୋରମାନଙ୍କୁ ଲଗାଇବା ଅପରାଧ ବୋଲି କୁହାଯାଇଛି । ସେଥିପାଇଁ ଆଇନ୍ ପ୍ରଣୟନ କରାଯାଇ ଦଣ୍ଡବିଧାନର ବ୍ୟବସ୍ଥାମାନ ରଖାଯାଇଛି ।

ଅନ୍ୟ ଏକ ପ୍ରଣିଧାନ ଯୋଗ୍ୟ ଆଇନ୍ ବ୍ୟବସ୍ଥାଟିଏ ୨୦୦୬ ମସିହାରେ ପ୍ରଣିତ ହୋଇଛି । ଏହି ଆଇନ Juvenile Justice (Care and Protecton) Amendment Act 2006.)ରେ ଶିଶୁ ଓ କିଶୋରମାନଙ୍କୁ ନ୍ୟାୟ ଓ ସୁରକ୍ଷା ଦେବାପାଇଁ ଅନେକ ବିଧି ବ୍ୟବସ୍ଥା ଖଞ୍ଜାଯାଇଛି । ଏହି ଆଇନ ବ୍ୟବସ୍ଥା ସହିତ ସୁରକ୍ଷା ନିମନ୍ତେ

ଶିଶୁ ସୁରକ୍ଷା ସମିତି (Child Welfare Committee) ଗଠନ, ଉଦ୍ଧାର ହେଉଥିବା ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର ଆବାସ ବାସସ୍ଥଳୀ (Children Home), ଶିଶୁମାନଙ୍କୁ ପୁନଃ ଥଇଥାନ ଓ ଶିକ୍ଷା ବ୍ୟବସ୍ଥା ସଂପର୍କରେ ଅନେକ କାର୍ଯ୍ୟକ୍ରମ ନିଆଯାଇଛି । ଶିଶୁ ଶ୍ରମିକଙ୍କୁ ଥଇଥାନ କରିବା ପାଇଁ କେନ୍ଦ୍ର ସରକାର ଜାତୀୟ ଶିଶୁ ଶ୍ରମିକ ପ୍ରକଳ୍ପ କାର୍ଯ୍ୟକାରୀ କରୁଛନ୍ତି । ଏହି ଯୋଜନାରେ ଆମ ରାଜ୍ୟର ୨୪ଟି ଜିଲ୍ଲାରେ ଶିଶୁ ଶ୍ରମିକଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ଖୋଲାଯାଇ ପ୍ରତ୍ୟେକ ଶିଶୁକୁ ମାଗଣାରେ ଜଳଖିଆ, ମଧ୍ୟାହ୍ନ ଭୋଜନ ସହ ୧୦୦ଟଙ୍କାର ଷ୍ଟାଇପେଣ୍ଡ ଦିଆଯିବାର ବ୍ୟବସ୍ଥା ରହିଛି ।

ଅତ୍ୟନ୍ତ ପରିତାପର ବିଷୟ ଯେ ଏତେ ସବୁ ବ୍ୟବସ୍ଥା ସତ୍ତ୍ୱେ ଦେଶରେ ଶିଶୁ ଓ କିଶୋରମାନଙ୍କୁ ଶିକ୍ଷାରୁ ବଂଚିତ କରି ଅନେକ ଘୃଣ୍ୟ ଓ ଆପତ୍ତିଜନକ କାର୍ଯ୍ୟରେ ଲଗାଯାଉଛି । ସମସ୍ତଙ୍କ ସାମନାରେ ଏହା ଘଟୁଛି । ଓଡ଼ିଶାରେ ଏହି ମାତ୍ରା ଖୁବ୍ ଅଧିକ ଥିବାର ଅନୁଭବ କେବଳ ନୁହେଁ, ଦୃଶ୍ୟମାନ ହୁଏ ।

ଏତେସବୁ ଆଇନ୍ ଓ ସରକାରୀ ଯୋଜନାସତ୍ତ୍ୱେ ଶିଶୁଶ୍ରମିକ ସମସ୍ୟା ସମାଧାନ ନ ହେବାର କାରଣ ଖୋଜି ବାହାର କରିବାକୁ ହେଲେ ଚାରିକାନ୍ଥ ଘେରା ସେମିନାରର ଆବଶ୍ୟକତା ନାହିଁ । ଯାହାସବୁ ଦୃଶ୍ୟମାନ ତାକୁ ନିରେଖି ଚାହିଁଲେ କାରଣ ସ୍ପଷ୍ଟ ହୋଇଯିବ ।

ପ୍ରଥମତଃ 'ଦାରିଦ୍ର୍ୟ' ହେଉଛି ଶିଶୁଙ୍କୁ କାମରେ ଖଟାଇବାର ମୁଖ୍ୟ କାରଣ । କେନ୍ଦୁପତ୍ର ତୋଳାଳୀ ଗୋଛା ସଜାଇବାରେ ଘରର ପିଲାକୁ ଲଗାଇଥିଲେ ସମୁଦାୟ ପରିବାର ଦି ପଇସା ଅଧିକ ରୋଜଗାର କରିଥାଏ । ପିଲା ସ୍କୁଲକୁ ମଧ୍ୟାହ୍ନ ଭୋଜନ ପାଇଁ ଯାଇ ହାଜିରା ପକାଏ ପୁଣି ଆସି ଘରର ମା'କୁ କାମର ସାହାଯ୍ୟ କରେ ବା ଗୋରୁପଲ ନେଇ ଜଙ୍ଗଲକୁ ଯାଏ । ବାପା ମା' ପିଲାକୁ ଅଭାବରେ ଥାଇ ବିକ୍ରୀକରି ଦେଉଥିବାର ସମ୍ବାଦ ଯେତେବେଳେ ଆସୁଛି ସେ ସମୟରେ କେତେଟା ଟଙ୍କା ଲୋଭରେ ପରଘରେ ଖଟାଇବାକୁ ଛାଡ଼ିବା, ଇଟାଭାଟିରେ କାମ କରିବାକୁ ଛାଡ଼ିବାରେ କୁଣ୍ଠିତ ହେବ କାହିଁକି ? ଦାରିଦ୍ର୍ୟ ତାଡ଼ନାରେ ଅନେକ ଶିଶୁ ବା କିଶୋର ଖଟୁଥିବା ସମସ୍ତେ ପ୍ରତିଦିନ ଚତୁଃପାର୍ଶ୍ୱରେ ଦେଖୁଛନ୍ତି ।

ଦ୍ୱିତୀୟ କାରଣ ହେଲା ପାରମ୍ପରିକ କୌଳିକ ବୃତ୍ତିରେ ରହି ବାରିକଟିଏ ବାଳକଟା ଶିଖାଇବା ଉଦ୍ଦେଶ୍ୟରେ ବା ଧୋବାଟିଏ ଇସ୍ତିକରିବା ଶିଖାଇବା ପାଇଁ ନିଜ ପିଲାକୁ ଅତି ଅଳ୍ପବୟସରୁ କାମରେ ଲଗାଇଥାଏ ଓ ମୋଚି ଛୋଟଛୁଆ ହାତରେ

ଯୋତାପଲିସ୍ ବାକ୍ସଦେଇ ରାସ୍ତାକଡ଼ର ଗଛମୂଳରେ ବସାଇ ଦିଏ । ତନ୍ତି ପିଲାଏ ଛୁଆବେଳେ ଲୁଗାବୁଣିବା, ତନ୍ତ ସଜାଡ଼ିବା, ସୂତା ରଙ୍ଗ କରିବା, ବାନ୍ଧ ତିଆରି କରିବା ଆଦି କାମ କରିଥାନ୍ତି । ଏହାକୁ ଅନେକ ଭାବନ୍ତି ଯେ କୌଳିକତା ଆଧାରରେ ପିଲାଏ କୌଶଳ(Skill) ଶିକ୍ଷା କରୁଛନ୍ତି । ଏହା କେତେକାଂଶରେ ସତ୍ୟ ହୋଇପାରେ ମାତ୍ର ସେ ଉପଯୁକ୍ତ ଶିକ୍ଷା ଅଭାବରୁ ଅନେକ କ୍ଷେତ୍ରର ସେ ସୁଯୋଗ ହାତେଇବାରେ ସକ୍ଷମ ହୋଇ ନଥାଏ ।

ତୃତୀୟ କାରଣ ହେଉଛି ପିତାମାତାଙ୍କର ଅଜ୍ଞତା । ପିଲାଙ୍କୁ କେତେକ କାମରେ ଖଟାଇଲେ ସେ ଯେ ଗୁଣୀ ହେବ, ଏକଥା ଅନେକ ଜାଣି ପାରନ୍ତି ନାହିଁ । ଫଳତଃ ଠିକାରେ ଆଣୁଥିବା ବିଡ଼ିବୋଳା କାମରେ ବା ଇଟାଭାଟି କାମରେ ଲଗାଇ ଦିଅନ୍ତି ।

ଚତୁର୍ଥ କଥାଟି ହେଉଛି ଶିଶୁ ବା କିଶୋରମାନେ ଅନେକ କାର୍ଯ୍ୟପାଇଁ ଉପଯୁକ୍ତ ବୋଲି ବିବେଚନା କରାଯାଇଥାଏ । ଛୋଟ ଢାବା, ଚା ଦୋକାନ, ଜଳଖିଆ ଦୋକାନର ବାସନ ମାଜିବା, ଚା, ଜଳଖିଆ, ଖାଦ୍ୟ ପରିବେଷଣ ଏମାନଙ୍କ ଜରିଆରେ ସହଜରେ ଓ କମ୍ ଖର୍ଚ୍ଚରେ ହୋଇ ପାରିବ ବୋଲି ଏହି କ୍ଷୁଦ୍ରମାଲିକମାନେ ବିଚାର କରିଥାନ୍ତି । ଏମାନେ ବି ଅନେକ ସମୟରେ ପିଲାଙ୍କୁ ନିଦରୁ ଉଠାଇବା ପାଇଁ ନିର୍ମମ ଭାବରେ ରଖିଥିବା ପିଲାମାନଙ୍କୁ ମାଡ଼ମାରିବା ସହିତ ନିଆଁଚେଙ୍କ ଦେଇଥିବାର ଦେଖାଯାଇଥାଏ । ଏହା ସାଧାରଣଙ୍କ ସାମନାରେ ହିଁ ଘଟିଥାଏ । ଏମାନଙ୍କୁ ବଳିପଡ଼ିଥିବା ଖାଦ୍ୟ ମଧ ଦିଆଯାଇଥାଏ ।

ଅନ୍ୟ ଏକ କଥା ହେଉଛି ପରିତ୍ୟକ୍ତ ପିଲା, ଅନାଥ ପିଲା ଆଦି ରାସ୍ତକଡ଼ର ଜରି ଉଠାଇବା, ରେଳ କମ୍ପାର୍ଟମେଣ୍ଟ ସଫା  କରିବା, ଛୋଟଛୋଟ ଦୋକାନରେ ବାସନମାଜିବା ଆଦି କାର୍ଯ୍ୟ କରିଥାନ୍ତି । ନହେଲେ ଚୋରୀ, ପକେଟମାର ବା ଭିକାରୀବୃତ୍ତି ଆପଣେଇ ଥାନ୍ତି ।

ଏହିସବୁ ସୂତ୍ରଗୁଡ଼ିକରୁ ପିଲାଙ୍କୁ ଉଦ୍ଧାର କରି ପାଠ ପଢ଼ାଇବା ଓ କାମ ଶିଖାଇବାକୁ ଆଖି ଆଗରେ ରଖି ୨ ୦ ୧ ୨ ମସିହାରେ ସେ ସମୟର ଉପା ସରକାର ଗୋଟିଏ ସୁବିସ୍ତୃତ ଆଇନ୍ (The child labour Prohibition and repulation) Amendment Bill-2012) ଆଗତ କରିଥିଲେ । ଏହି ଆଇନର ଉଦ୍ଦେଶ୍ୟ ସଂପର୍କରେ ଯାହା କୁହାଯାଇଥିଲା ସେ ସବୁ ହେଉଛି –

ଶିଶୁମାନଙ୍କୁ ସମସ୍ତ ଅର୍ଥ ରୋଜଗାରକାରୀ କାର୍ଯ୍ୟ (Occupation)ରେ ଲଗାଇବା ନିଷେଧ । ଏଥିସହିତ କିଶୋରମାନଙ୍କୁ ସ୍ୱାସ୍ଥ୍ୟ ହାନୀକାରକ କାର୍ଯ୍ୟ (Hazordous occupation)ରେ ଲଗାଇବା ନିଷେଧ କରାଯିବ (Sec-2) । ୧୯୮୬ର ଶିଶୁ ଶ୍ରମିକ ନିରୋଧ ଆଇନ ବଦଳାଯାଇ ଶିଶୁ ଓ କିଶୋର ଶ୍ରମ ନିରୋଧ ଆଇନ ଅଣାଗଲା । ଶିଶୁର ଶିକ୍ଷାଧିକାର ଆଇନ୍ ୨୦୦୯ ଆଧାରରେ ଏହି ନୂଆ ଆଇନ୍ ପ୍ରଣୀତ ହେଲା । ଏହି ନୂଆ ଆଇନରେ କଡ଼ାକଡ଼ି ଭାବେ କୌଣସି ଶିଶୁକୁ କୌଣସି କାର୍ଯ୍ୟ ଏପରିକି କୌଳିକ ବୃତ୍ତିରେ (Any occupation or process) ଲଗାଯିବାକୁ ପୂର୍ଣ୍ଣ ନିଷେଧ ନିମନ୍ତେ ଏହି ଆଇନ ଅଣାଗଲା । ସେହିପରି ସ୍ୱାସ୍ଥ୍ୟ ହାନୀକାରକ କାର୍ଯ୍ୟରେ କିଶୋରମାନଙ୍କୁ ନିୟୋଜିତ କରାଯାଇ ପାରିବ ନାହିଁ ବୋଲି ନୂଆ ଆଇନରେ କୁହାଗଲା ।

ଯେଉଁ ସଂସ୍ଥା ବା ବ୍ୟକ୍ତି ଏହି ଆଇନ ଭଙ୍ଗ କରିବେ ସେମାନଙ୍କ ପାଇଁ ଅଧିକ କଠୋର ଦଣ୍ଡ ବିଧାନର ବ୍ୟବସ୍ଥା ରହିଲା । ଯେଉଁଥିରେ ଅତିକମ୍‌ରେ ୬ ମାସ ଜେଲ୍ ଓ ୨୦ ହଜାର ଟଙ୍କା ଜୋରିମାନା ରହିଲା ଏବଂ ଏହାକୁ ୨ବର୍ଷ ଜେଲ୍ ଓ ୫୦ ହଜାର ଟଙ୍କା ଜୋରିମାନାକୁ ବଢ଼ାଯାଇ ପାରିବ ବୋଲି କୁହାଗଲା । ସମସ୍ତ ଅପରାଧକୁ ଧର୍ତ୍ତବ୍ୟ (Cognizable) ଶ୍ରେଣୀଭୁକ୍ତ କରାଗଲା । ପ୍ରସ୍ତାବିତ ଚିଠା ଆଇନକୁ ଅଧିକ ତୀକ୍ଷ୍ଣ କରିବା ଉଦ୍ଦେଶ୍ୟରେ ପାର୍ଲାମେଣ୍ଟର ଷ୍ଟାଣ୍ଡିଂ କମିଟିକୁ ପଠାଗଲା । ଷ୍ଟାଣ୍ଡିଂ କମିଟି ତାହାକୁ ପରାମର୍ଶ ନେଇ ଲୋକସଭା ଓ ରାଜ୍ୟସଭାରେ ୨୦୧୩ ମସିହା ଡିସେମ୍ବର ୧୩ ତାରିଖରେ ଉପସ୍ଥାପିତ କରାଗଲା ।

ଷ୍ଟାଣ୍ଡିଂ କମିଟିର ସୁପାରିଶ ମଧ୍ୟରେ ମୁଖ୍ୟତଃ ଅଡ଼ିଓ ଭିଡ଼ିଓ କାର୍ଯ୍ୟରେ ଶିଶୁମାନଙ୍କୁ ଲଗାଇବା ବେଳେ ଯେପରି ଅଧିକ ପରିଶ୍ରମ ବା ଯାତନା(Rigorous Routine) ନ ଦିଆଯାଏ ସେଥିପ୍ରତି ଆଇନରେ ବ୍ୟବସ୍ଥା ରହିବାକୁ କୁହା ଯାଇଥିଲା । ଆନ୍ତର୍ଜାତୀୟ ଶ୍ରମସଂସ୍ଥା (ILO) ୧୯୭୩ରେ ହୋଇଥିବା ୧୩୮ ତମ ସମ୍ମିଳନୀର (Minimum wage convention)ର ପ୍ରସ୍ତାବ ଅନୁସାରେ ବାଧ୍ୟତାମୂଳକ ଶିକ୍ଷା ଶେଷ (୮ମ ଶ୍ରେଣୀ) ସହିତ ୧୪ବର୍ଷକୁ ଶିଶୁ ଶ୍ରମିକର ସଂଜ୍ଞା ନିର୍ଣ୍ଣୟ ପାଇଁ ରଖିବାକୁ ଷ୍ଟାଣ୍ଡିଂ କମିଟି ମତ ଦେଇଥିଲେ । ଷ୍ଟାଣ୍ଡିଂ କମିଟି ପାଠ ପଢୁଥିବା ପିଲା ଘରେ କାମ କରିବା ବା ବାପମା'ଙ୍କୁ ସାହାଯ୍ୟ କରିବା କଥାକୁ ପୂରାପୂରି ନାପସନ୍ଦ କରିଥିଲେ । କୌଣସି ପରିସ୍ଥିତିରେ ବି ସ୍ୱାସ୍ଥ୍ୟହାନୀକାରୀ କାର୍ଯ୍ୟ ବା ଯାହା ପିଲାର ନୈତିକ ଅଧୋପତନର

କାରଣ ହୋଇପାରେ, ସେପରି କାର୍ଯ୍ୟରେ ଆଦୌ ନିଯୁକ୍ତି ନ ଦେବାକୁ ଷ୍ଟାଣ୍ଡିଂ କମିଟି ସୁପାରିଶ କରିଥିଲେ । ମାନ୍ୟବର ସୁପ୍ରିମ କୋର୍ଟ ଏମ୍.ସି. ମେହେଟା କେସ୍‌ରେ କହିଥିଲେ ସେ ଶିଶୁ ଶ୍ରମିକ ନିରୋଧ କାର୍ଯ୍ୟକାରୀ କରିବାକୁ ହେଲେ ପରିବାରର ଦାରିଦ୍ର୍ୟ ମୋଚନ ସରକାରଙ୍କର ପ୍ରଥମ କର୍ତ୍ତବ୍ୟ । ସେଥିପାଇଁ ଷ୍ଟାଣ୍ଡିଂ କମିଟି ଗୋଟିଏ ଶିଶୁ ମଙ୍ଗଳ ପାଣ୍ଠି ସୃଷ୍ଟିପାଇଁ ସୁପାରିଶ କରି ଦରିଦ୍ର ପରିବାରକୁ କିଶୋର ବୟସ ଅତିକ୍ରମ କରିବା ପର୍ଯ୍ୟନ୍ତ (୧୪ରୁ ୧୮ବର୍ଷ) ପରିବାରରେ ରହି ସାହାଯ୍ୟ କରୁଥିଲେ ଅବା ଥଇଥାନ କ୍ଷେତ୍ରର କିଛି ପାରିଶ୍ରମିକ ବ୍ୟବସ୍ଥା ରଖିବାକୁ କହିଥିଲେ ।

ଏହି ସମୟରେ ଦେଶରେ ସାଧାରଣ ନିର୍ବାଚନ ଆସିବାରୁ ବିଲ୍‌ଟି ପାରିତ ହୋଇ ନଥିଲା । ପରବର୍ତ୍ତୀ ଅବସ୍ଥାରେ ଶ୍ରୀ ନରେନ୍ଦ୍ର ସିଂ ମୋଦିଙ୍କ ନେତୃତ୍ୱରେ ଏନ୍.ଡି.ଏ ସରକାର ଆସିଲେ ଏବଂ ସ୍ଲୋଗାନଟିଏ ଦେଲେ 'ଶ୍ରମଏବ ଜୟତେ' ଓ ୨୦୧୫, ମେ ମାସ ୧୩ ତାରିଖରେ ୨୦୧୨ର ଶିଶୁ-କିଶୋର ଶ୍ରମିକ ନରୋଧରେ ବିଲ୍ ଯେପରି ସଂଶୋଧନ କରାଯାଇ କ୍ୟାବିନେଟ୍‌ରେ ମଂଜୁରୀ ମିଳିଲା ତାହା ଶ୍ରମର ଜୟଗାନ ବୋଲି କୁହାଯାଇପାରେ । ମାତ୍ର ଶ୍ରମିକର ଅବସ୍ଥା ପ୍ରତି ଯେ ଆଦୌ ଦୃଷ୍ଟି ଦିଆଯାଇ ନାହିଁ ଏକଥା କୁହାଯାଇପାରେ । ଏଥିରେ ଶିଶୁ ଓ କିଶୋର ଶ୍ରମିକମାନଙ୍କ ପ୍ରତି ଅନେକ ଭାବରେ ଅଣଦେଖା କରାଯାଇଛି । ପରିବାରକୁ ସାହାଯ୍ୟ କରିବା ନାମରେ ଶିଶୁ ଓ କିଶୋର ଶ୍ରମିକକୁ କୌଳିକ କାମରେ ଲଗାଇବାର ଅନୁମତି ମିଳିଛି । ବିଦ୍ୟାଳୟର ପାଠପଢ଼ା ପରେ କାମ କରିବାର ଅନୁମତି ଦେଇ ଜଣାଇ ଦିଆଗଲା ଯେ ଶିଶୁ ବା କିଶୋରମାନଙ୍କୁ ଶ୍ରମିକଭାବେ ଦେଖିବାର ଅଭିପ୍ରାୟ ରହିଛି । ଟେଲିଭିଜନ ସିନେମାରେ କାର୍ଯ୍ୟ କରିବା ଉପରେ ଯେଉଁ ଆଂକୁଶ ଷ୍ଟାଣ୍ଡିଂ କମିଟି ଲଗାଇଥିଲେ ମୋଦିଙ୍କ କ୍ୟାବିନେଟ୍ ଅନୁମୋଦନ କାଳରେ ତାହା କୋହଳ କରି ଦେଇଥିଲେ । ସାମାଜିକ ଓ ପାରିବାରିକ ଆବଶ୍ୟକତା ଦୃଷ୍ଟିରୁ ଶିଶୁମାନଙ୍କ ଅଂଶିଦାରିତାକୁ ପ୍ରୋତ୍ସାହନ ଦେଇ ଏହି ସରକାର ପ୍ରମାଣ କରିଛନ୍ତି ଯେ ପାଠସାଠ ନ ପଢ଼ି ଧୋବାଘର ପିଲା ଧୋବା, ଭଣ୍ଡାରୀଘର ପିଲା ଭଣ୍ଡାରୀ, ତନ୍ତୀଘର ପିଲା ତନ୍ତୀ ଏବଂ ବ୍ରାହ୍ମଣଘର ଛୋଟଛୁଆ ଘଣ୍ଟି-ଡାଳଧରି ପୂଜା କରିବାର ପରମ୍ପରା ବଜାଏ ରହୁ ।

ଏହି ନୂଆ ସଂଶୋଧନ ଆଇନ (୨୦୧୫)କୁ ପାରିତ କଲାବେଳେ ସ୍କୁଲରେ ପାଠ ପଢ଼ାବେଳେ ପିଲା ନିଜ ଇଚ୍ଛାମୁତାବକ କୌଣସି ଗୋଟିଏ କୌଶଳପୂର୍ଣ୍ଣ କାର୍ଯ୍ୟରେ ମନଦେଇ ଶିଖିବାର ବ୍ୟବସ୍ଥା ରହିଲେ କିଛି ଅସୁବିଧା ରହିବ ନାହିଁ । କାରଣ ତାହା

ପାଠପଢ଼ା କାର୍ଯ୍ୟକ୍ରମ ସହିତ ଶିଶୁମାନଙ୍କୁ ବିଭିନ୍ନ କାର୍ଯ୍ୟ (ଭିକ୍ଷା ମାଗିବା, ଯୋତା ସଫା, ରେଳ ଓ ରେଳ ବଗି ଧାରଣା ସଫା କରିବା ଇତ୍ୟାଦି)ରୁ ଅଣାଯାଇ ଦୁଇବର୍ଷିଆ କାର୍ଯ୍ୟକ୍ରମ ଜରିଆରେ ଶିକ୍ଷା ଓ ଥଇଥାନ କରିବାର ବ୍ୟବସ୍ଥା ହୋଇ ପାରିବ । ଲେଖକ ଏପରି ଏକ ଉଦ୍ୟମ ସେ ସମୟର (୨୦୦୩) ଶିଶୁ ମହିଳା ଉନ୍ନୟନ ବିଭାଗ ଡାଇରେକ୍ଟର ଅପରାଜିତା ଷଡ଼ଙ୍ଗୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଭୁବନେଶ୍ୱରରେ ଆରମ୍ଭ କରିଥିଲେ । ଗୋଟିଏ ହେଲ୍ପ ଲାଇନ୍ ଓ ଅଫିସ୍ ମଧ୍ୟ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଉଦ୍‌ଘାଟନ କରିଥିଲେ । ତାହା କିଛିଦିନ କାର୍ଯ୍ୟ କଲା । କୌଣସି କାରଣରୁ ୨୦୦୫ ମସିହାରୁ ତାହା ଆଉ ଦୃଶ୍ୟମାନ ହେଲାନାହିଁ ।

✡✡✡

# ଶ୍ରମ ଓ ମଜୁରି ସଂପର୍କର ଯଥାର୍ଥତା

ଶ୍ରମର ପ୍ରକାରଭେଦ ଯଥା, ଅଣ କୁଶଳୀ, ଅର୍ଦ୍ଧ କୁଶଳୀ, କୁଶଳୀ, ଅତିକୁଶଳୀକୁ ନେଇ ମଜୁରିର ପ୍ରକାରଭେଦ ବା କମ୍ ବେଶୀ ପଛରେ ଯୁକ୍ତି ଅଛି । ଅଣକୁଶଳୀ ଶ୍ରମିକ ବେଶୀ ଖଟଣୀ Manual labour) ପରିବର୍ତ୍ତେ ଅଳ୍ପ ଉତ୍ପାଦନ କରିଥାଏ । ଏଥିସହିତ ଅଧିକ ଶ୍ରମଦାନ କରିଥାଏ । ବୁଦ୍ଧି, ଜ୍ଞାନ ଓ କୌଶଳଯୁକ୍ତ ଶ୍ରମିକ ନିଶ୍ଚୟ ଅଳ୍ପ ସମୟରେ ଅଧିକ ଉତ୍ପାଦନ କରିଥାଏ । ହେଲେ ସେହି ଏକାକାମ ପାଇଁ ସ୍ଥାନନ୍ତରରେ ଭିନ୍ନ ଭିନ୍ନ ମଜୁରି ଧାର୍ଯ୍ୟ ହେବା କେତେଦୂର ଯୁକ୍ତି ଯୁକ୍ତ ତାହା ଦେଖିବାର ଅଛି । ଅଧିକନ୍ତୁ ଗୋଟିଏ ଜାଗାରେ ସମାନ କାମ ବା ଶ୍ରମ ପାଇଁ ଭିନ୍ନ ଭିନ୍ନ ମଜୁରୀର ଯଥାର୍ଥତା ଆଦୌ ନାହିଁ । ଭାରତରେ ଶ୍ରମ ଆଇନ ଏପରି ଏକ ଅବସ୍ଥା ସୃଷ୍ଟି କରିଛି ଯେ ଗୋଟିଏ ଜାଗାରେ ପଥର ଓ ବୋଲଡ଼ର ଭାଂଗୁଥିବା ଜଣେ ମଜୁରୀଆର ଦର କେନ୍ଦ୍ର ସରକାର ଅଧିନସ୍ତ ରେଳବାଇ ବିଭାଗର ଗୋଟିଏ ହୋଇଥିବା ସ୍ଥଳେ ସେହି ପାଖରେ ରାଜ୍ୟ ସରକାରଙ୍କ ରାସ୍ତାକାମ ପାଇଁ ଏକାକାମ କରୁଥିବା ମଜୁରିଆର ଦୈନିକ ମୂଲ ଭିନ୍ନ ଥାଏ ଏବଂ ସେହି ଏକା କାମ ପାଇଁ ଗୋଟିଏ ଦିନ ମଜୁରିଆ ପାଇଁ ବିଭିନ୍ନ ରାଜ୍ୟରେ ଭିନ୍ନ ଭିନ୍ନ ମଜୁରି ହାର ରହିଛି ।

ସମଗ୍ର ଦେଶପାଇଁ ଗୋଟିଏ ନିମ୍ନତମ ମଜୁରି ଆଇନ ୧୯୪୮ ମସିହାରେ ପ୍ରଣୟନ ହେଲା । ଏହି ମଜୁରି ଯଦି ଶ୍ରମିକକୁ ଦିଆ ନଯାଏ । ତେବେ ନିଯୁକ୍ତିକାରୀ ବ୍ୟକ୍ତି ବା ସଂସ୍ଥା ଆଇନ ଆଗରେ ଦୋଷୀ ସାବ୍ୟସ୍ତ ହେବ । ଏହି ଆଇନର ମୁଖ୍ୟ ଲକ୍ଷ୍ୟ ହେଲା ଶ୍ରମିକ ଶ୍ରମ ଦାନବେଳେ ସାମାଜିକ ନ୍ୟାୟ ପାଇବା ସହିତ ତା' ଶ୍ରମ ବଦଳରେ ଉପଯୁକ୍ତ ପ୍ରାପ୍ୟ ପାଇବ । ସେଥିପାଇଁ ମଜୁରି ନିର୍ଦ୍ଧାରଣ ସମୟରେ ଏହା ବିଶେଷତଃ ଘଣ୍ଟା ହିସାବରେ, ଦିନ ହିସାବରେ, ସପ୍ତାହ ହିସାବରେ ବା ମାସ ହିସାବରେ ଦିଆ ଯାଇଥାଏ । ଏହି ନିମ୍ନତମ ମଜୁରି ଲାଗୁ ହେବାବେଳେ ଜାଣି ରଖିବା ଉଚିତ ଯେ ମଜୁରିଦାତା (The Employer) ର ଲାଭ ହେଲା କି ନ ହେଲା ତାର ଦେବା ସାମର୍ଥ୍ୟ ଅଛି କି ନାହିଁ ଏହା ଦେଖାଯାଇ ନଥାଏ । ଏହି ମିନିମମ୍ ୱେଜ୍ ଆକ୍ଟରେ ଗୋଟିଏ କେନ୍ଦ୍ରସ୍ତରୀୟ ଓ ରାଜ୍ୟସ୍ତରୀୟ ପରାମର୍ଶ ମଣ୍ଡଳି (Advisery Board) ରହିଥାଏ ମଜୁରି ଦର ପୁନଃ ନିର୍ଦ୍ଧାରଣ ଉକ୍ତ ଉପଦେଷ୍ଟା ପରିଷଦ ପରାମର୍ଶ ଦେଇଥିବା ଆଧାରରେ ହୋଇଥାଏ ।

ଏହି ଆଇନ୍ ଅଧୀନରେ କେନ୍ଦ୍ର ସରକାର ଗୋଟିଏ ନିୟମ(Rules) ୧୯୫୦ ମସିହାରେ ତିଆରି କଲେ । କେନ୍ଦ୍ରୀୟ ଅଧିନିୟମ(Central Rules) ପରି ରାଜ୍ୟମାନେ ମଧ୍ୟ ନିଜ ନିଜର ନିୟମ (State rules) ପ୍ରଣୟନ କରିଥିଲେ । ଓଡ଼ିଶା ସରକାର ୧୯୫୪ ମସିହାରେ ଏହି ଉଦ୍ଦେଶ୍ୟ ନିୟମ ଲାଗୁ କଲେ । ଗୃହୀତ ନିୟମ ଆଧାରରେ ଅଣକୁଶଳୀ, କୁଶଳୀ ଓ ଉଚ୍ଚକୁଶଳୀ କାର୍ଯ୍ୟସବୁ ଚିହ୍ନଟ କରାଗଲା । ସେହି ବର୍ଗଙ୍କୁ ଚିହ୍ନଟକରି ୧୯୮୭ ମସିହାରେ ଏକ ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇଲା । ଏହି କାର୍ଯ୍ୟ ତାଲିକା (Sheduled of work) ସମୟରୁ ସମୟକୁ ବଦଳିଥାଏ । ବିଚିତ୍ର ଓ ତାତ୍ପର୍ଯ୍ୟପୂର୍ଣ୍ଣ କଥାଟି ହେଉଛି ଏହି ତାଲିକାରେ କେବଳ ଦିନ ମଜୁରିଆ ବା ଅସ୍ଥାୟୀ ଭାବେ ନିଯୁକ୍ତ ଶ୍ରମିକ, ଠିକା ଶ୍ରମିକର ଶ୍ରମ ମୂଲ୍ୟ ଘୋଷଣା ହୋଇ ନଥାଏ, ଏଥି ସହିତ ମାସିକଆ ଦରମା ଥିବା କେତେକ କାର୍ଯ୍ୟକ୍ଷେତ୍ର ମଧ୍ୟ ବିଜ୍ଞପ୍ତି ହୋଇଥାଏ । ସରକାରୀ ବିଜ୍ଞପ୍ତି ୧୯୮୭ ମସିହାରେ ଫେବୃଆରୀ ୨୦ ତାରିଖରେ ପ୍ରକାଶ ପାଉଥିଲା । ଷ୍ଟୋର ଆସିଷ୍ଟାଣ୍ଡ, ଗୋଡ଼ାଉନ୍ ଆସିଷ୍ଟାଣ୍ଡ, ବିଲ୍ କଲେକ୍ଟର, ମୁନ୍‌ସି, କିରାଣୀ, ଟାଇପିଷ୍ଟ ଆଦିପାଇଁ ଗୋଟିଏ ମାସିକିଆ ଦରମା ଧାର୍ଯ୍ୟ ଥିଲା । ଏହାଠାରୁ ଅନ୍ୟ ଏକ ପୃଥକ ମାସିକିଆ ଦରମା ଭଣ୍ଡାର ରକ୍ଷକ ଦୋକାନ, ଗୋଡ଼ାଉନ ରକ୍ଷକ, କ୍ୟାସିୟର, କିରାଣି, ଟାଇପିଷ୍ଟଙ୍କ ପାଇଁ ଧାର୍ଯ୍ୟ ହୋଇଥିଲା । ଅନ୍ୟ ଏକ ଉଚ୍ଚଦର ମାସିକାଆ ଭିତ୍ତିରେ ସିନିୟର ଆକାଉଣ୍ଟାଣ୍ଟ, ସୁପରିନ୍‌ଟେଣ୍ଡେଣ୍ଟ, ହେଡ୍ କିରାଣୀ ଓ ମ୍ୟାନେଜରଙ୍କର ନିମ୍ନତମ ମଜୁରି ତାଲିକାରେ ପ୍ରକାଶ ପାଇଥିଲା । ସେ ସମୟରେ ଯେଉଁ ମାସିକିଆ ଦରମା ଧାର୍ଯ୍ୟ ହୋଇଥିଲା ତାହା ଯଥାକ୍ରମେ ମାସିକ ଟ୪୮୦.୦୦, ଟ୫୪୦.୦୦ ଓ ୬୦୦ ଟଙ୍କା ରଖା ଯାଇଥିଲା । ସେହିଦିନ ଅନ୍ୟ କେତେଗୋଟି ବିଜ୍ଞପ୍ତି ପ୍ରକାଶ ପାଇ ଅନ୍ୟ ଏକ ଦରମା ସଂପର୍କରେ ସୂଚିତହେଲା । ଯେଉଁଥିରେ କିରାଣୀ, ଟାଇପିଷ୍ଟ୍ ଷ୍ଟେନୋଗ୍ରାଫରଙ୍କୁ ଆକାଉଣ୍ଟାଣ୍ଟ୍‌ଙ୍କ ଦରମାକୁ ୪୮୦.୦୦ ରଖାଗଲା । କେଉଁ ପରିସ୍ଥିତିରେ କାହିଁକି ଏପରି ଭିନ୍ନ ଭିନ୍ନ ବିଜ୍ଞପ୍ତି ପ୍ରକାଶ ପାଇଲା ଓ ଦରମା ହାରରେ ତାରତମ୍ୟ ରହିଲା ଜଣା ପଡ଼ିନଥାଏ । ଏମାନଙ୍କ କ୍ଷେତ୍ରରେ ଦରମା ଶବ୍ଦଟି ବ୍ୟବହାର କରାଯିବାର କାରଣ ହେଉଛି ଏହା ଦିନ ମଜୁରିଆଙ୍କ ମଜୁରି ନିର୍ଦ୍ଧାରଣଠାରୁ ଭିନ୍ନଭାବେ ହୋଇଥାଏ । ମାସିକିଆ ଖଟଣିରେ ସପ୍ତାହ ତ ଛୁଟି (off day) ଓ ଅନ୍ୟାନ୍ୟ ଘୋଷିତ ଛୁଟି (Holiday) ସ୍ୱତନ୍ତ୍ର ରହିଥାଏ ଓ ସେଦିନ କାମକୁ ଡାକିଲେ ଧାର୍ଯ୍ୟ ମଜୁରିର ଦୁଇଗୁଣା ଦିଆଯାଇଥାଏ । ରାଜ୍ୟ ସରକାରଙ୍କ କର୍ମଚାରୀମାନଙ୍କ ପାଇଁ ଏକ ଦରମା

ନିର୍ଦ୍ଧାରଣ କମିଟି ବସିଥାଏ । ଏମାନଙ୍କ ପାଇଁ ଅନେକ ସୁବିଧାସୁଯୋଗ ସହିତ ଗୋଟିଏ ଦରମାର ବନ୍ଦୋବସ୍ତ ହୋଇଥାଏ, ତା'ର କାରଣ ହେଉଛି ଏମାନେ ସଂଗଠିତ । ସେକ୍ରେଟାରିଏଟର କର୍ମଚାରୀ ହୁଅନ୍ତୁ ବା ଜିଲ୍ଲାସ୍ତରୀୟ କର୍ମଚାରୀ ହୁଅନ୍ତୁ ଅବା ଡାଇରେକ୍ଟରିଏଟ୍ ଅଧୀନରେ କାର୍ଯ୍ୟ କରୁଥିବା କର୍ମଚାରୀ ହୁଅନ୍ତୁ, ଏମାନେ ଚାପ ସୃଷ୍ଟି କରିବାରେ ସକ୍ଷମ । ମାତ୍ର କଳକାରଖାନାରେ ଅସ୍ଥାୟୀ ଶ୍ରମିକ(Casual) ଦିନ ମଜୁରିଆ(Daily worker) ବା ବାହାରେ ଦୋକାନ ଓ ଘରେ କାମ କରୁଥିବା ସମସ୍ତ ବ୍ୟକ୍ତି ଅସଂଗଠିତ ଓ ସେମାନଙ୍କର ମାଲିକ ଏକ ନୁହନ୍ତି ।

ସେହି ଦିନଠାରୁ ଅବଧି ମଜୁରୀ ଓ ଦରମାର ନିମ୍ନତମ ମଜୁରୀ ହାରର ପରିବର୍ତ୍ତନ ଘଟି ଚାଲିଛି; ହେଲେ ଗୋଟିଏ ନ୍ୟାୟଯୁକ୍ତ ଓ ଯୁକ୍ତି ସଂଗତ ଶ୍ରମମୂଲ୍ୟ ଧାର୍ଯ୍ୟ ହୋଇନାହିଁ ଓ ମଜୁରି ବା ଦରମାରେ ସମତା ନଥାଇ ତାରତମ୍ୟ ରହିଚାଲିଛି । ଏବେ ସଂରକ୍ଷିତ କାର୍ଯ୍ୟ ତାଲିକାରେ ୮୨ ଗୋଟି କାର୍ଯ୍ୟ ବିଜ୍ଞପିତ ହୋଇଥିବାର ଦେଖାଯାଏ ।

ଜଗତୀକରଣ ପ୍ରଭାବରେ ଦେଶ ତମାମ ଶ୍ରମ ଓ ଶ୍ରମିକ ପାଇଁ ଏକ ଭିନ୍ନ ପବନ ବୋହିବାରେ ଲାଗିଛି । ଠିକା ଶ୍ରମିକ (Consolidated and contractual worker), ଅନିୟମିତ କର୍ମଚାରୀ(Casual Employee), ଆଉଟ୍ ସୋର୍ସିଂ ୱାର୍କର ଆଦି ସଂଖ୍ୟା ସବୁକ୍ଷେତ୍ରରେ ଏପରିକି ଶିକ୍ଷା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ବୃଦ୍ଧି ପାଇବାରେ ଲାଗିଛି । କେବଳ ଉଚ୍ଚସ୍ତରୀୟ ସରକାରୀ କର୍ମଚାରୀ ଆଇ.ଏ.ଏସ୍., ଆଇ.ପି.ଏସ୍., ଆର.ଏଫ୍.ଏସ୍ କ୍ଷେତ୍ରରେ ଏପର୍ଯ୍ୟନ୍ତ ଏ ଅଘଟଣ ଘଟିନାହିଁ । ତଥାପି କେତେକ କ୍ଷେତ୍ରରେ ଅବସରପ୍ରାପ୍ତ ଅଫିସରମାନଙ୍କୁ ନେଇ ପୁନଃ ନିଯୁକ୍ତି ଠିକାରେ ଦିଆ ଯାଇଥାଏ । ଚାକିରି ଯେତେ ସ୍ଥିର (Sanctioned Post) ହୋଇ ଥାଉନା କାହିଁକି ମୋଟ ଉପରେ ସର୍ବତ୍ର ଠିକା ଓ ସ୍ୱଳ୍ପକାଳୀନ ଭିତ୍ତିରେ କର୍ମଚାରୀ ନିଯୁକ୍ତି ଦିଆଯାଉଛି । ଅନେକ କ୍ଷେତ୍ରରେ ମୁଖ୍ୟ ନିଯୁକ୍ତିକାରୀ (Prineipal employee)ଗୋଟିଏ ଅଦ୍‌ଭୁତ ସ୍ଥିତି ସୃଷ୍ଟି କରିଥାଏ । ବିଭିନ୍ନ ସଂସ୍ଥା ଓ ବ୍ୟକ୍ତିବିଶେଷଙ୍କୁ ଠିକା ଶ୍ରମିକ ଯୋଗାଇଥାଏ । ଏ କ୍ଷେତ୍ରରେ ଏହି ନିଯୁକ୍ତିକାରୀ ଏକ ଶ୍ରମିକ ଏଜେଣ୍ଟ (Labour Agent)ଭାବେ କାର୍ଯ୍ୟକରି କମିଶନ ଏଜେଣ୍ଟର କାର୍ଯ୍ୟ ନିର୍ବାହ କରିଥାଏ । ଏକପକ୍ଷରେ ସରକାରୀ ଦପ୍ତରରେ ନୂଆ ନୂଆ ଢଙ୍ଗରେ ଅସଂଗଠିତ ଶ୍ରମିକ ସୃଷ୍ଟି ହେବାରେ ଲାଗିଛନ୍ତି । ବେସରକାରୀ କ୍ଷେତ୍ରରେ ଯେ ନ ବଢୁଛି ତା' ନୁହେଁ । ସରକାରୀ ଓ ବେସରକାରୀ କ୍ଷେତ୍ରରେ ବହୁ ପ୍ରକାରର

ନିଯୁକ୍ତି ଦିଆଯାଇଛି, ଯେଉଁମାନଙ୍କର ଋକିରି ନିରାପତ୍ତା, ଦରମା ନିରାପତ୍ତା ନାହିଁ । ଏ ସମସ୍ତଙ୍କୁ ସଂଗଠିତ କରି ମାଲିକ ସହିତ ବା ସରକାର ସହିତ ଦର କସାକସି ହେବା ଅତ୍ୟନ୍ତ କଷ୍ଟକର । ଯେଉଁଥିପାଇଁ ଉଲରେ ବଞ୍ଚିବାର ମଜୁରୀ ପରି ଗୋଟିକୁ ଉଚ୍ଚତର ମଜୁରି (Fair wage) ଶ୍ରମିକ ବା ଶ୍ରମପାଇଁ ନିର୍ଦ୍ଧାରଣ କରିବା କଷ୍ଟକର ହୋଇ ପଡ଼ିଛି । ସେହି ଦୃଷ୍ଟିରୁ ଦେଖିବାକୁ ଗଲେ ନିମ୍ନତମ ମଜୁରି ହେଉଛି ଏକ ସୁରକ୍ଷା ପ୍ରଦାନକାରୀ ଆଇନ ।

ଏଥିରେ କୌଣସି ଆଳ ଦେଖାଇ ମଜୁରି କମିପାରିବ ନାହିଁ । ମାତ୍ର ଏହି ସ୍ତରଟି ଅତି ନିମ୍ନସ୍ତରର (Rock bottom) ହୋଇଥିବା ହେତୁ ଆଉ ଟିକିଏ ଉଚ୍ଚସ୍ତରର ମଜୁରି ବ୍ୟବସ୍ଥା ରହିଛି, ତାହା ହେଉଛି, ଟିକେ ଉଚ୍ଚମାନର (Fair wage) ।

ପିଲାର ପାଠପଢ଼ା ଖର୍ଚ୍ଚ, ଔଷଧ ପତ୍ର, ପରିବାର ଭରଣପୋଷଣ (ଚୈଙ୍କ ୟୁନିଟ୍) ଶ୍ରମିକର ଦାୟିତ୍ୱ । ଉତ୍ପାଦନ କରିବାର କ୍ଷମତା ତଥା ଦକ୍ଷତା ବୃଦ୍ଧି ପାଇଁ ଆବଶ୍ୟକ ଜ୍ଞାନ କୌଶଳ ଅର୍ଜନ ନିମନ୍ତେ ଖର୍ଚ୍ଚ ଆଦି ଅନ୍ତର୍ଭୁକ୍ତ କରାଯିବାର ବ୍ୟବସ୍ଥାଟି ଅତ୍ୟନ୍ତ ଯୁକ୍ତିଯୁକ୍ତ । ଏ ସ୍ତରରେ ମଜୁରୀ ପରିମାଣ ସର୍ବଦା ଅସ୍ଥାୟୀ ଓ ସ୍ଥୁଳ ଏବଂ କାରଖାନା ବିଶେଷରେ ଗତିଶୀଳ । ତୃତୀୟ ସ୍ତରର ମଜୁରୀଟି ହେଉଛି ଶ୍ରମିକ ପାଇଁ, ସୁବିଧା ଜନକ ବ୍ୟବସ୍ଥା । ଏ ବ୍ୟବସ୍ଥାଟି ଶ୍ରମିକକୁ ଦେବାର ଆବଶ୍ୟକତା ଉପରେ ଭାରତ-ସମ୍ବିଧାନ ଗୁରୁତ୍ୱ ଆରୋପ କରିଛି । ସମ୍ବିଧାନର ୪୩ଧାରାରେ ଶ୍ରମିକକୁ ସୁନ୍ଦର ସ୍ୱଚ୍ଛଳ ଜୀବନଯାପନ କରିବାର ମାନ ସହିତ ଅବସର ଓ ସାମାଜିକ ତଥା ସାଂସ୍କୃତିକ ସୁବିଧା ଦାନ କରିବାର ବ୍ୟବସ୍ଥା ସମ୍ପର୍କରେ କୁହାଯାଇଛି ।

ଏହି ନିମ୍ନତମ ମଜୁରି ଧାର୍ଯ୍ୟ କଲାବେଳେ ଗୋଟିଏ ସୁସ୍ଥ ସମ୍ମାନଜନକ ଜୀବନ (Descent standard of life and full enjoyment of leiser and social cultural opportunity) ପାଇଁ ମଜୁରି ଧାର୍ଯ୍ୟ ହେବାର ନିର୍ଦ୍ଦେଶ ଧାରା ୪୩ (Directive principle-Act.43) ଅତ୍ୟନ୍ତ ପରିଧାନ ଯୋଗ୍ୟ । ଏଥିସହିତ ଭାରତୀୟ ସଂବିଧାନର ଧାରା ୨୧ ର ତର୍ଜମା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଯାହାର ଆଧାରରେ ମହାରାଷ୍ଟ୍ର ସରକାର ଓ ପ୍ରତିପକ୍ଷ ଚନ୍ଦ୍ରଭାନୁ ମକଦ୍ଦମାରେ ମାନ୍ୟବର ସୁପ୍ରିମକୋର୍ଟଙ୍କ ରାୟ ୧୯୮୩ରେ ସ୍ପଷ୍ଟଭାବେ କହିଛନ୍ତି ଯେ ଜୀବନ କେବଳ ପଶୁପରି ବଂଚିବା (Survival or Animal existance) ନୁହେଁ । ପ୍ରତ୍ୟେକ ମଣିଷ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଧାରଣ କରିବ (Live with human dignity) ବୋଲି ମାନ୍ୟବର ସୁପ୍ରିମକୋର୍ଟ ରାୟ ଦେଲେ ।

ସୁପ୍ରିମକୋର୍ଟଙ୍କର ଫ୍ରାନ୍‌ସିସ୍ କୋରଲେ ମୁରିନ୍ ଓ ଦିଲ୍ଲୀ ଭିତରେ ଥିବା ମକଦ୍ଦମା ରାୟରେ (SC 1981/746) କୁହାଗଲା ଯେ ପ୍ରତ୍ୟେକ ମଣିଷର ଜୀବନ ପୂର୍ଣ୍ଣ, ଫଳପ୍ରସୂ ଏବଂ ମର୍ଯ୍ୟାଦାପୂର୍ଣ୍ଣ (meaningful complete and worthliving) ହେବା କଥା ମଧ୍ୟ କୁହାଗଲା । ମାନ୍ୟବର ସୁପ୍ରିମକୋର୍ଟ ଅନ୍ୟ ଏକ ରାୟ Maneka Gandhi V/s Vison of India-1978-S.C.803) ରେ ସ୍ପଷ୍ଟଭାବେ କହିଛନ୍ତି ଯେ, ଭଲ ଜୀବନର ବାଖ୍ୟା କରିଛନ୍ତି । ମଣିଷର ବଞ୍ଚିବାର ଅଧିକାର ସଂପର୍କରେ ଅନ୍ୟ ଏକ ସୁପ୍ରିମକୋର୍ଟ ରାୟରେ  ଖାଦ୍ୟ ଅଧିକାର, ପିଇବା ପାଣିର ବ୍ୟବସ୍ଥା, ସୁନ୍ଦର ପରିବେଶ, ଶିକ୍ଷା, ସ୍ୱାସ୍ଥ୍ୟ ସେବା ଓ ରହିବାର ସମନ୍ୱୟ ପ୍ରଭୃତିର ବ୍ୟବସ୍ଥା ଉପରେ ଯୋର ଦିଆ ଯାଇଅଛି (Chameli Singh V. State of U.P) ।

ସବୁବର୍ଗର ଅସଂଗଠିତ ଶ୍ରମିକମାନଙ୍କୁ ନିମ୍ନତମ ମଜୁରୀ ନିର୍ଦ୍ଧାରଣ ସମୟରେ ମାନ୍ୟବର ସୁପ୍ରିମକୋର୍ଟଙ୍କ ରାୟ ଓ ମାନବିକ ଅଧିକାରକୁ ଆଖି ଆଗରେ ରଖି ତାହା କରାଯିବା ଦରକାର ଏବଂ ସବୁ ମଣିଷ ପାଇଁ ଦେଶ ତମାମ ଏକ ପ୍ରକାର କାମପାଇଁ ଗୋଟିଏ ମଜୁରି ବ୍ୟବସ୍ଥା ଲାଗୁ ହେବା ଦରକାର ।

ଶ୍ରମ ବଦଳରେ ମଜୁରୀ ଲାଗୁ ହେବା ସମୟରେ ଏହା ହେଉଛି ତା'ର ଶ୍ରମ ବଦଳରେ ବା ଶ୍ରମର କ୍ଷତି ଭରଣା ଜନିତ ପାଉଣା ବୋଲି ବିଚାରିବା ଭୁଲ୍ । ମଜୁରୀ ନିର୍ଦ୍ଧାରଣ ହେବା ସହିତ ଶ୍ରମ, ଶରୀରଚର୍ଯ୍ୟା ଓ ଶ୍ରମିକର ମାନସିକ ପ୍ରସ୍ତୁତି ନିମନ୍ତେ ଏକ ପରିବେଶ ସୃଷ୍ଟି ହେବା ଦରକାର ।

ଏଣୁ ଶ୍ରମ ପାଇଁ ମଜୁରି ନିର୍ଣ୍ଣୟବେଳେ ନିମ୍ନତମ ମଜୁରି ହେଉଛି ଶ୍ରମିକ ଓ ତା ପରିବାରର ଏକ ସୁରକ୍ଷା (Socio-economic security) ବୋଲି ଧରା ଯାଇଥାଏ । କୁଶଳୀ, ଅର୍ଦ୍ଧକୁଶଳୀ, ଉଚ୍ଚକୁଶଳୀର ମୂଲ୍ୟାୟନ ହେଉଛି ଶ୍ରମିକ ଓ ଶ୍ରମର ସୁରକ୍ଷା ସହିତ ଯୁକ୍ତ ରହିଥିବା ଶ୍ରମିକର ଜ୍ଞାନ, ଯନ୍ତ୍ର ବ୍ୟବହାରକାରୀ କୌଶଳ ପରିଚ୍ଛେଳନାଗତ ବୁଦ୍ଧିର ମାପକ । ଏଥିରେ ଅଳ୍ପ ସମୟରେ ଅଧିକ ଉତ୍ପାଦନ ହୋଇଥାଏ ଓ ଉତ୍ପାଦନର ବିକ୍ରିଲବ୍ଧ ଧନ ପୁଞ୍ଜି ନିବେଶକାରୀ ମାଲିକ ହାତକୁ ଯାଇଥାଏ । ଏହାର ଗୋଟାଏ ଅଂଶ ଶ୍ରମିକ ପାଖକୁ ଯିବାର ଯୁକ୍ତିଟି ହେଉଛି କୁଶଳୀ, ଅର୍ଦ୍ଧକୁଶଳୀ, ଉଚ୍ଚକୁଶଳୀ ମଜୁରି ଦର ଧାର୍ଯ୍ୟ କରିବା ବେଳର ନିଷ୍ପତ୍ତି । ଏହା ଶ୍ରମ-ଘଣ୍ଟା ଓ ଉତ୍ପାଦାନଭିତ୍ତିକ ଭିନ୍ନ ଏକ ହିସାବ ଦ୍ୱାରା ଧାର୍ଯ୍ୟ ହୋଇଥାଏ । ବିନିଯୋଗ ହୋଇଥିବା ମାଲିକର ମୋଟ ପୁଂଜିର ଅଂଶ ଓ ଅନ୍ୟାନ୍ୟ ଖର୍ଚ୍ଚ ହିସାବ ବାହାରକରି ଶ୍ରମିକର ଉତ୍ପାଦନ ଅନୁସାରେ ମଜୁରି

ଧାର୍ଯ୍ୟ କରାଯାଏ । ଏହା ମଜୁରି-ସୁରକ୍ଷା (wage security) ନୁହେଁ ବରଂ ମଜୁରି ପ୍ରୋତ୍ସାହନ (Wage incentive) ।

ଅସଂଗଠିତ ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷାକାରୀ ସୁରକ୍ଷିତ ମଜୁରି (Secured wage) ଧାର୍ଯ୍ୟ ଅନ୍ୟ ସମସ୍ତ ଶ୍ରମ ଆଇନ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ । ଏଥିରେ କେନ୍ଦୁପତ୍ର ତୋଳାଳୀଠାରୁ ଆରମ୍ଭ କରି ବିଭିନ୍ନ ବିଭାଗର ନିର୍ମାଣ ଶ୍ରମିକ, କୃଷି ଶ୍ରମିକ ସବୁବର୍ଗର ଠିକା ଶ୍ରମିକଙ୍କର ମର୍ଯ୍ୟାଦାପୂର୍ଣ୍ଣ ରୋଜଗାର ପାଇଁ ସୁରକ୍ଷା ମିଳିଥାଏ । ଏଥିରେ ସଂବିଧାନପ୍ରଦତ୍ତ ମୌଳିକ ଅଧିକାର(Fundamental Right) ଓ ମାନବିକ ଅଧିକାର (Human Right) ଓତଃପ୍ରୋତ ଭାବେ ଜଡ଼ିତ ।

ଶ୍ରମିକକୁ ଶୋଷଣରୁ ମୁକ୍ତ କରି ରଖିବା ଉଦ୍ଦେଶ୍ୟରେ ସମଗ୍ର ଆଇନ ଓ ତାର କାର୍ଯ୍ୟକାରୀତା ଉପରେ ଗୁରୁତ୍ୱ ଦେବାବେଳେ କେନ୍ଦ୍ର ସରକାର ମନେ ରଖିବା ଉଚିତ ଯେ ଯେପରି କେନ୍ଦ୍ରସ୍ତରରେ ଗୋଟିଏ ଦରମା କମିଶନ (Pay - Commission) ବସିବାର ପ୍ରକ୍ରିୟା ରହିଛି ଓ ଭିନ୍ନ ଭିନ୍ନ ଉପଦେଷ୍ଟା ପରିଷଦ (Advisory Board) ରହିଛି; ସେହିପରି ଜାତୀୟସ୍ତରରେ 'ଓ୍ୱେଜ କମିଶନ' ଏକ ନିର୍ଦ୍ଦିଷ୍ଟ ସମୟ ଅନ୍ତରରେ ବସି ମଜୁରି ଓ ଶ୍ରମର ବିଭାଗିକରଣ କରିବା ଜରୁରୀ । ତା'ହେଲେ ରାଜ୍ୟମାନଙ୍କ ପାଇଁ ପୃଥକ ମଜୁରି ଧାର୍ଯ୍ୟର ଆବଶ୍ୟକତା ରହିବ ନାହିଁ, ଭଲ ମଜୁରି ଓ ସମାନ କାମପାଇଁ ସମାନ ମଜୁରି ସର୍ବତ୍ର ମିଳିବାର ସୁଯୋଗ ସୃଷ୍ଟି ହେବ, ଗୋତି ଶ୍ରମିକ(Bonded labour), ଦାଦନ ଶ୍ରମିକ(Migrant labour), ଶିଶୁ ଶ୍ରମିକ ଓ ମହିଳା ଶ୍ରମିକଙ୍କ ଉପୁଜୁଥିବା ସମସ୍ୟା ମଧ୍ୟ ଲାଘବ ହେବ ।

✡✡✡

# ଅସଂଗଠିତ ଶ୍ରମିକର ନିରାପତ୍ତା

ଅସଂଗଠିତ ଶ୍ରମିକର ମଜୁରି ନିରାପତ୍ତା ହେଉଛି ସର୍ବନିମ୍ନ ମର୍ଯ୍ୟଦାଯୁକ୍ତ ମଜୁରି (Living wage) । ବଞ୍ଚିବାର ମଜୁରି ହେଉଛି ମର୍ଯ୍ୟାଦା ସହିତ ବଞ୍ଚିବା (Living with dignity) । ଗୋଟିଏ ମଜୁରିଆ ପାଇଁ ଏହା ଯେତିକି ଜରୁରୀ, କାର୍ଯ୍ୟରତ ସମୟରେ ଓ କାର୍ଯ୍ୟ କ୍ଷମତା ରହିତ ହେବା ସମୟର ନିରାପତ୍ତାର ଆବଶ୍ୟକତା, ସେ ଓ ତା'ର ପରିବାର ପାଇଁ ସେହି ପରିମାଣରେ ଜରୁରୀ । ଯେହେତୁ ସେମାନଙ୍କ କର୍ମକ୍ଷେତ୍ର ବିକ୍ଷିପ୍ତ, ସରକାରୀ ଚାକିରୀ ପରି ସ୍ଥାୟିତ୍ୱ ନାହିଁ, ସେମାନେ ସଂଗଠିତ ହୋଇ ମାଲିକ ବା ନିଯୁକ୍ତିକାରୀ ବିରୋଧରେ ସଂଘବଦ୍ଧ ଆନ୍ଦୋଳନ ଚଳାଇ ନିଜ ଦାବୀର ମୂଲଚାଲ କ୍ଷମତା (Bargaining power) ସହିତ ଏହି ସମୟର ନିରାପତ୍ତା ସେମାନଙ୍କ ପାଇଁ ଅପରିହାର୍ଯ୍ୟ । ସରକାରୀ କର୍ମଚାରୀମାନଙ୍କ ପାଇଁ ଇନ୍‌ସୁରାନ୍‌ସ, ପ୍ରୋଭିଡେଣ୍ଟ ଫଣ୍ଡ, ସ୍ୱାସ୍ଥ୍ୟସେବା ନିମନ୍ତେ ଅଗ୍ରୀମ ଦେବାର ବ୍ୟବସ୍ଥା ରହିଛି । ସଂଗଠିତ ଶ୍ରମିକ ଅର୍ଥାତ୍ ସରକାରୀ ଅର୍ଦ୍ଧସରକାରୀ ବେତନଭୋଗୀ କର୍ମଚାରୀ ଓ କଳକାରଖାନାରେ କାର୍ଯ୍ୟରତ ଶ୍ରମିକଶ୍ରେଣୀଙ୍କ ନିରାପତ୍ତା ନିମନ୍ତେ ଅନେକ ନିୟମ ପ୍ରଣୟନ କରାଯାଇଛି । ସ୍ୱାସ୍ଥ୍ୟଗତ କାରଣରୁ କୌଣସି ଅସୁବିଧା ହେଲେ ସେମାନଙ୍କ ପାଇଁ ଏମ୍ପ୍ଲଇଜ୍ ଷ୍ଟେଟ୍ ଇନ୍‌ସ୍ୟୁରାନ୍‌ସ ସ୍କିମ୍ ୧୯୪୮ରେ ପ୍ରଣିତ ହୋଇ ଏଥିରେ କଳକାରଖାନା ଓ କଣ୍ଟ୍ରାକ୍ଟର ପାଖରେ କାର୍ଯ୍ୟରତ ଶ୍ରମିକମାନଙ୍କର ଓ ତାଙ୍କ ପରିବାରର (I.P. family) କୁ ସ୍ୱାସ୍ଥ୍ୟସେବା ଯୋଗାଇ ଦେବାର ବ୍ୟବସ୍ଥା ଅଛି । ଏଥିରେ କୌଣସି ଦିନ ମଜୁରିଆ, କୃଷି ମୂଲିଆ, ଜଙ୍ଗଲ ମୂଲିଆଙ୍କୁ ଗ୍ରହଣ (I.P. ଭାବରେ) ବା ଅନ୍ତର୍ଭୁକ୍ତ କରାଯାଇ ନାହିଁ । ଏବେ ଅବଶ୍ୟ ପଞ୍ଜିକୃତ ନିର୍ମାଣ ଶ୍ରମିକଙ୍କୁ ଏଥିରେ ଅନ୍ତର୍ଭୁକ୍ତ କରିବାର ଉଦ୍ୟମ ଚାଲୁ ହୋଇଛି । ଅଥଚ ଇ.ଏସ୍.ଆଇ. ତଥା ବୀମା ସଂସ୍ଥାକୁ ଘରୋଇକରଣ କରାଯିବା ନିମନ୍ତେ ମୋଦି ସରକାର ତତ୍ପର ଥିବା ଦେଖାଗଲାଣି । ଘରୋଇକରଣ ପରେ ଇ.ଏସ୍.ଆଇ ଏହିସବୁ ଶ୍ରେଣୀର ଶ୍ରମିକମାନଙ୍କୁ ସେବା ଯୋଗାଇଦେବାରେ କେତେ ଉତ୍ତରଦାୟୀ ରହିବେ ତାହା ଏକ ବିରାଟ ପ୍ରଶ୍ନବାଚୀ ହୋଇ ଛିଡ଼ା ହୋଇଛି । । ସେହିପରି କର୍ମକ୍ଷେତ୍ରରେ ଦୁର୍ଘଟଣାର ସମ୍ମୁଖୀନ ହେଉଥିବା ଶ୍ରମିକ ପାଇଁ ଗୋଟିଏ ନିରାପତ୍ତା (Workmen compensasion Act.)ର ବ୍ୟବସ୍ଥା ରହିଛି । ହେଲେ ଚାଷ କରୁଥିବା ଲୋକ ଲଙ୍ଗଳଲୁହା ବାଜି ପାଦଟିଏ ହରାଇଲେ ଅବା ଆଖୁ ପେଡୁଥିବା ସମୟରେ ଖାଇରେ ଦୁଇଟି ଆଙ୍ଗୁଠି ହରାଇଲେ କିମ୍ବା ଚକିଚଳାଇ ଅଟା ବା ଧାନ

ପେଶୁଥିବା ବ୍ୟକ୍ତିଟିଏ ଆଙ୍ଗୁଠି ଅବା ହାତ ପାପୁଲି କଟିଗଲେ କୌଣସି କ୍ଷତି ପୂରଣ ମିଳିବାର ନିୟମ ନାହିଁ । ମୋଟାମୋଟିଭାବେ ଅସଂଗଠିତ ଶ୍ରମିକ ବା ଦିନ ମଜୁରୀଆ, କୃଷି ଶ୍ରମିକଆଦିଙ୍କ ପାଇଁ କୌଣସି ବିଧିବଦ୍ଧ ନିରାପତ୍ତା ଆଇନର ବ୍ୟବସ୍ଥା ନାହିଁ ।

ଅସଂଗଠିତ ଶ୍ରମିକମାନେ ସମାଜରେ ବିଛାଡ଼ି ହୋଇ ରହିଥିବା ଦୃଷ୍ଟିରୁ ଏହା ସାମଗ୍ରୀକ ଭାବେ ସାମାଜିକ ନିରାପତ୍ତାର ଅନ୍ତର୍ଭୁକ୍ତ ବୋଲି ଧରି ନିଆଯାଇଛି । ଦେଶର ପ୍ରଥମ ଜାତୀୟ ଶ୍ରମ କମିଶନ ୧୯୬୯ ମସିହାରେ ସାମାଜିକ ନିରାପତ୍ତା ମାନବିକ ମର୍ଯ୍ୟାଦା(Human dignity) ଓ ସାମାଜିକ ନ୍ୟାୟ ଭିତ୍ତିରେ (Social Justice) ହେବାର ଯୁକ୍ତି ଉପସ୍ଥାପନ କଲେ । ଜନମଙ୍ଗଳକାରୀ ରାଷ୍ଟ୍ର, ଯେଉଁମାନଙ୍କର ଶ୍ରମଦାନରେ ଗଢ଼ି ଉଠିଥାଏ ସେମାନଙ୍କୁ ସବୁ ପ୍ରକାର ସୁରକ୍ଷା ଦେବା ତା'ର କର୍ତ୍ତବ୍ୟ ବୋଲି ଏହି ଶ୍ରମ କମିଶନ ମତ ରଖିଲେ ।

ବହୁ ପୂର୍ବରୁ ଆନ୍ତର୍ଜାତୀୟ ଶ୍ରମ ସଂଗଠନ(ILO) ମଧ୍ୟ ତା'ର ବିଜ୍ଞାପତ୍ର (Approaches to social security) ରେ ସ୍ପଷ୍ଟ କରିଛନ୍ତି ଯେ ସମାଜର ସବୁ ବର୍ଗର ଲୋକେ କର୍ମକ୍ଷେତ୍ରରେ ଯେଉଁସବୁ କ୍ଷତି (Loss)ର ସମ୍ମୁଖିନ ହୋଇଥାନ୍ତି ସେସବୁ ଭରଣା କରିବା ସମସ୍ତ ଜନମଙ୍ଗଳକାରୀ ରାଷ୍ଟ୍ରର ପରମ ଦାୟିତ୍ୱ । ସାମାଜିକ ନିରାପତ୍ତାର (The Encycolpedia of social work) ଅନ୍ୟ ଏକ ସଂଜ୍ଞା ଅନୁସାରେ ପ୍ରତ୍ୟେକ ବ୍ୟକ୍ତି ଦୁର୍ଘଟଣାର ସମ୍ମୁଖିନ ହେବା, ଅସୁସ୍ଥ ରହିବା(illness), ସ୍ତ୍ରୀଲୋକଙ୍କର ପିଲା ଜନ୍ମର ପୂର୍ବ ବା ପରବର୍ତ୍ତୀ ଲାଳନ ପାଳନ ସମୟ, ବାର୍ଦ୍ଧକ୍ୟ ସମୟର ଅକ୍ଷମତା ଆଦି ହେତୁ ରୋଜଗାର କରିବାର କ୍ଷମତା ହ୍ରାସ ପାଇଥାଏ । ଏହାର ଭରଣା ହିଁ ଏକ ନିରାପତ୍ତା ବୋଲି ଧରା ଯାଇଥାଏ ।

ଏହି ସଂଜ୍ଞା ଆଧାରରେ ୧୯୪୨ ମସିହାରେ ସାର ୱିଲିୟମ ବେଭିରିଜ୍ ଏକ ରିପୋର୍ଟ ଦାଖଲ କରିଥିଲେ ଯାହାକୁ ନେଇ ସାମାଜିକ ନିରାପତ୍ତା ଆଇନର ଚିତ୍ର ପ୍ରସ୍ତୁତ ହେଲା । ବେଭିରିଜଙ୍କ ପ୍ରଦତ୍ତ ତଥ୍ୟ ଅନୁସାରେ ମୃତ୍ୟୁବରଣ ଜନିତ କ୍ଷତି Loss of life), ଶାରିରୀକ ଅକ୍ଷମତା(disability), ବେକାରୀ (Unemployment), ଅବସରକାଳୀନ ଭତ୍ତାRetirement pension), ବିବାହକାଳୀନ ଆବଶ୍ୟକତା, ମୃତ୍ୟୁ ସମୟର କ୍ରିୟା ଆଦି ସାମାଜିକ ଦାୟିତ୍ୱ ନିମନ୍ତେ (Funeral expenses), ଶିଶୁମାନଙ୍କୁ ପ୍ରସ୍ତୁତ କରିବା, (Childhood preparation up to 16 years) ରୋଗ ତଥା ସ୍ୱାସ୍ଥ୍ୟଗତ ଅକ୍ଷମତା ପ୍ରଭୃତି ପ୍ରତ୍ୟେକ ବ୍ୟକ୍ତିର ନିରାପତ୍ତାର ଅନ୍ତର୍ଭୁକ୍ତ ବୋଲି କୁହାଗଲା ।

ଭାରତରେ ଯେତେଦିନ ପର୍ଯ୍ୟନ୍ତ ଯୌଥ ପରିବାର ବ୍ୟବସ୍ଥା ସୁଦୃଢ଼ ଥିଲା ଏହିସବୁ ନିରାପତ୍ତା ସେହିସବୁ ପରିବାରରୁ ହିଁ ମିଳୁଥିଲା । ପରିବାର ସହିତ ଯୋଡ଼ିହୋଇ (Inbuilt) ରହିଥିଲା । ଜଣେ କେହି ପରିବାରରେ ଅସୁସ୍ଥ ହୋଇ ପଡ଼ିଲେ ଅନ୍ୟମାନେ ତା'ର କାର୍ଯ୍ୟ କରୁଥିଲେ ଓ ସେ ପୂର୍ଣ୍ଣ ସୁସ୍ଥ ହେବା ପର୍ଯ୍ୟନ୍ତ ସମସ୍ତ ବ୍ୟୟବରାଦ କରୁଥିଲେ । ଯେହେତୁ ସମସ୍ତ ଆୟ ବା ଉତ୍ପାଦନ ଗୋଟିଏ ଯୌଥ ପରିବାରରେ ସମଷ୍ଟିଗତ କାର୍ଯ୍ୟହୋଇ ରହିଥିଲା । ଏ ନିରାପତ୍ତାର ଦାୟିତ୍ୱ ପରିବାର ବହନ କରୁଥିଲା । ହେଲେ ଯେଉଁଦିନଠାରୁ ଉତ୍ପାଦନ ବ୍ୟକ୍ତିକୈନ୍ଦ୍ରିକ ହେଲା ଉତ୍ପାଦନ ପରିଚାଳନାର ଢଙ୍ଗ ପରିବର୍ତ୍ତନ ହେଲା, ଶ୍ରମର ନିୟନ୍ତ୍ରଣ ଅପେକ୍ଷା ପୁଞ୍ଜି ନିୟନ୍ତ୍ରଣରେ ରହିବାକୁ ଆରମ୍ଭ ହେଲା, ସେହିଦିନଠାରୁ ବ୍ୟକ୍ତି ବା ଖଟିଖିଆର ନିରାପତ୍ତା ଦାୟିତ୍ୱ ପରିବାର ନେବାର ସାମର୍ଥ୍ୟ ହରାଇଲା ଓ ଶ୍ରମଜୀବିର ନିରାପତ୍ତା ଅସ୍ଥିର ବୋଧ ହେଲା । ଯେପରି ତନ୍ତରୁ ଲୁଗା ଉତ୍ପାଦନ ନ ହୋଇ କଳକାରଖାନାରେ ଉତ୍ପାଦନ ଆରମ୍ଭ ହେଲା, ପ୍ରତ୍ୟେକ ବ୍ୟକ୍ତିର କାର୍ଯ୍ୟ ସ୍ୱତନ୍ତ୍ର ଓ ସାମର୍ଥ୍ୟ ଅନୁସାରେ ଅର୍ଜ୍ଜନର ବ୍ୟବସ୍ଥା ହେଲା ଓ ପରିବାର ନିରାପତ୍ତା ବ୍ୟବସ୍ଥାର ଦାୟିତ୍ୱ ରାଷ୍ଟ୍ରୀୟ ନିରାପତ୍ତା ବ୍ୟବସ୍ଥା ଉପରେ ଅଧିକ ନିର୍ଭରଶୀଳ ହେବା ସ୍ୱାଭାବିକ ।

ସାମାଜିକ ନିରାପତ୍ତା ଭାରତରେ ପାରିବାରିକ ବ୍ୟବସ୍ଥା ଅନ୍ତର୍ଭୁକ୍ତ ଥିଲା, ହେଲେ ଆଇନର ବେଷ୍ଟନୀ ଭିତରେ ବା ରାଷ୍ଟ୍ରର ଦାୟିତ୍ୱ ରୂପେ ଅନେକ ଦେଶରେ ବହୁ ପୂର୍ବରୁ ନିରାପତ୍ତା ବା ସୁରକ୍ଷା ପ୍ରଦାନକାରୀ କାର୍ଯ୍ୟକ୍ରମ ଗୃହୀତ ହୋଇଥିଲା । ପ୍ରଥମେ ଇଂଲଣ୍ଡରେ ୧୮୯୭ ମସିହାରେ ଶ୍ରମଜୀବୀର କ୍ଷତି ଭରଣା ଆଇନ (Workmen's compensation Act) ପ୍ରଣୀତ ହୋଇଥିଲା । ଗୋଟିଏ ଜାତୀୟ ବୀମା ଆଇନ୍ ୧୯୧୧ ମସିହାରେ ଇଂଲଣ୍ଡରେ ପ୍ରଣୟନ ହେଲା; ଯାହାକି ମୁଖ୍ୟତଃ ଦୈହିକ ପରିଶ୍ରମ Manual labour) କରୁଥିବା ପ୍ରତ୍ୟେକ ୧୪ବର୍ଷରୁ ୬୫ବର୍ଷ ପର୍ଯ୍ୟନ୍ତ ବ୍ୟକ୍ତିଙ୍କୁ ପଞ୍ଜିକୃତ (Cover) କରିବାର ବ୍ୟବସ୍ଥା କରିଥିଲା ।

ବେଭିରିଜ୍ ରିପୋର୍ଟକୁ ଆଧାର କରି ୧୯୪୩ ମସିହାରେ ଇଂଲଣ୍ଡ ଅନେକ ସାମାଜିକ ନିରାପତ୍ତା ଯୋଜନାମାନ ପ୍ରଣୟନ କରିଥିଲା । ସେଥି ମଧ୍ୟରେ (୧) ପରିବାର ଭତ୍ତା ଯୋଜନା (Scheme of family alloweneces),(୨) ଜାତୀୟ ବୀମା ଯୋଜନା, (୩) ଜାତୀୟ ସ୍ୱାସ୍ଥ୍ୟ ଯୋଜନା (୪) ଜାତୀୟ ସହାୟତା ଯୋଜନା ଆଦି ପ୍ରଣୟନ ହେଲା ।

ଇଂଲଣ୍ଡରେ ଏହି ସବୁ ନିରାପତ୍ତା ବ୍ୟବସ୍ଥାଗୁଡ଼ିକ ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ ଓ ଆଦର୍ଶ ସ୍ଥାନୀୟ ।

ଇଂଲଣ୍ଡ ପରି ଯୁକ୍ତରାଷ୍ଟ୍ର ଆମେରିକାରେ ମଧ୍ୟ ସାମାଜିକ ନିରାପତ୍ତା ବ୍ୟବସ୍ଥା ସବୁବର୍ଗର କର୍ମଜୀବୀପାଇଁ ଅନେକ ଦିନରୁ ପ୍ରଣୀତ ହୋଇଛି । ସେଥିମଧ୍ୟରେ ମୁଖ୍ୟତଃ ୧୯୩୫ର ସାମାଜିକ ନିରାପତ୍ତା ଆଇନ ବିଚାରଯୋଗ୍ୟ । ଏଥିରେ ଶ୍ରମଜୀବୀମାନଙ୍କୁ ଅନେକ ପ୍ରକାର ସୁରକ୍ଷା ବ୍ୟବସ୍ଥା ରହିଛି ।

ଭାରତରେ ଅଦ୍ୟାବଧି ଅସଂଗଠିତ ଶ୍ରମଜୀବୀମାନଙ୍କ ପାଇଁ ନିରାପତ୍ତା ବ୍ୟବସ୍ଥା ଅପହଞ୍ଚ ଅଛି । ତିନିଗୋଟି ମୁଖ୍ୟ ଆଇନ (E.S.I Act., Materity Benefit Act, Workmen conpensation Act.) ଅଧୀନରେ ଯେଉଁସବୁ ସୁବିଧା ସୁଯୋଗର ବ୍ୟବସ୍ଥା ରହିଛି ଅସଂଗଠିତ ଶ୍ରମିକମାନଙ୍କ ପାଇଁ ତାହା ମିଳିନାହିଁ । କଳକାରଖାନା ଓ ବଡ଼ ବଡ଼ ଠିକାଦାରମାନଙ୍କ ପାଖରେ କାର୍ଯ୍ୟରତ ଶ୍ରମିକମାନଙ୍କ ପାଇଁ ଏହା ପ୍ରଯୁଜ୍ୟ ।

ଆନ୍ତର୍ଜାତୀୟ ଶ୍ରମ ସଂଗଠନ (ILO) ସାମାଜିକ ନିରାପତ୍ତା ମଜଭୁତ କରିବା ନିମନ୍ତେ ଅନେକ ସଂଦେଶ ପତ୍ର (Charters) ପ୍ରସ୍ତୁତ କରିଛନ୍ତି । ସେଥିମଧ୍ୟରେ କର୍ମକ୍ଷେତ୍ରରେ ଲିଙ୍ଗଗତ ପ୍ରଭେଦ ଦୂର ବିଷୟଟି (C. No. 100, C.No. 111 of 1951) ଅଧିକ ଗୁରୁତ୍ୱଲାଭ କରିଛି । ସେହିପରି ଗର୍ଭବତୀ ସ୍ତ୍ରୀଙ୍କର ସୁରକ୍ଷା ନିମନ୍ତେ ଆନ୍ତର୍ଯ୍ୟାତୀୟ ନିଷ୍ପତ୍ତି(Convention No.3) କରାଯାଇଥିଲା । ଆନ୍ତର୍ଜାତୀୟ ଶ୍ରମ ସଂଗଠନର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ (Convention-17)ରେ କର୍ମଜୀବୀର ଦୁର୍ଘଟଣାଜନିତ କ୍ଷତି ଭରଣା ନିମନ୍ତେ କରାଯାଇଛି । ସେହିପରି କାର୍ଯ୍ୟଜନିତ ରୋଗ(Occupationa diseases) ହେତୁ ଶ୍ରମିକର କ୍ଷୟକ୍ଷତି ଭରଣା ନିମନ୍ତେ (convention No.18) ବିସ୍ତୃତ (Consisting of 10 Articles) ପ୍ରସ୍ତାବମାନ ଗୃହୀତ ହୋଇଥିଲା । କେବଳ କର୍ମଜୀବୀମାନଙ୍କ ପାଇଁ ନୁହେଁ ସମସ୍ତ ସାମର୍ଥ୍ୟଥାଇ କାର୍ଯ୍ୟକ୍ଷେତ୍ରର ସୁଯୋଗ ପାଇନଥିବା ପ୍ରତ୍ୟେକଙ୍କ ପାଇଁ ମଧ୍ୟ ଆନ୍ତର୍ଜାତୀୟ ଶ୍ରମସଂଗଠନ ତତ୍ପରତା ପ୍ରକାଶ କରିଛନ୍ତି (Convention No. 44 with 23 Articles) । ପ୍ରତ୍ୟେକ ବ୍ୟକ୍ତିର ସ୍ୱାସ୍ଥ୍ୟଗତ ଅବନତି (Sickness) ଆଦି ସୁରକ୍ଷା ଦେବା ଉଦ୍ଦେଶ୍ୟରେ ଯେଉଁ ନିଷ୍ପତ୍ତି (C. No.-130 of 1969) ନିଆଯାଇଥିଲା ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଭାରତରେ ଏକ ଯୌଥ ପରିବାର ବ୍ୟବସ୍ଥା ଓ କର୍ମକ୍ଷେତ୍ରଗୁଡ଼ିକ ପରିବାର ମାଲିକାନାରେ ପରିଚାଳିତ ଥିବା ହେତୁ ଆଲୋଚିତ ନିରାପତ୍ତାଗୁଡ଼ିକ ଭାରତୀୟ

ସମାଜରେ ଆବଶ୍ୟକ ପଡୁ ନଥିଲା । ହେଲେ ପରବର୍ତ୍ତୀ ଅବସ୍ଥାରେ ଆନ୍ତର୍ଜାତୀୟ ସଂଗଠନର ଏ ସଂପର୍କିତ ଆଲୋଚନା ଓ ପ୍ରସ୍ତାବ ସହିତ ଇଂଲଣ୍ଡ ତଥା ଯୁକ୍ତରାଷ୍ଟ୍ର ଆମେରିକା ପ୍ରଭୃତି ଜନମଙ୍ଗଳକାରୀ ରାଷ୍ଟ୍ରମାନଙ୍କର ନିରାପତ୍ତା ଜନିତ ଆଇନ୍ ଭାରତ ସରକାରଙ୍କୁ ଏ ଦିଗରେ ସୁଚିନ୍ତିତ ବିଧିବ୍ୟବସ୍ଥା କରିବାକୁ ବାଧ୍ୟ କରିଥିଲା । ଏହା ପରେପରେ ଏ ସଂପର୍କିତ ଆଇନ ଓ ଯୋଜନାମାନ ପ୍ରସ୍ତୁତ କରିବାକୁ । କେନ୍ଦ୍ର ଓ ରାଜ୍ୟ ସରକାରମାନେ ପଦକ୍ଷେପ ନେଇଥିଲେ । ଦିନକୁ ଦିନ ସମାଜର ଅସମତା ବୃଦ୍ଧି, ବ୍ୟକ୍ତିକୈନ୍ଦ୍ରିକ ଉତ୍ପାଦନ ବା ରୋଜଗାର ଧାରା ସହିତ ଗୋଟିଏ ବା ଦୁଇଟି ରୋଜଗାର ଉପରେ ଅତ୍ୟଧିକ ନିର୍ଭରଶୀଳତା, ପାରିବାରିକ ବିଶୃଙ୍ଖଳା ବୃଦ୍ଧି ପ୍ରଭୃତି ହେତୁ ସାମାଜିକ ନିରାପତ୍ତା ଦିନକୁ ଦିନ ଅଧିକ ଆବଶ୍ୟକ ହୋଇ ଉଠିଛି ।

ମହାତ୍ମାଗାନ୍ଧି ଜାତୀୟ ରୋଜଗାର ଆଇନ ଓ ୧୮୬୧ର ଆପ୍ରେଣ୍ଟିସ୍ ଆକ୍ଟ ସଂଶୋଧନ କରାଯାଇ ଅସଂଗଠିତ ଶ୍ରମିକ ନିରାପତ୍ତା ଆଇନ, ନିର୍ମାଣ ଶ୍ରମିକ ଆଇନ, ଖାଦ୍ୟ ସୁରକ୍ଷା ଆଇନ, ଶିକ୍ଷା ସୁରକ୍ଷା ଆଇନ ପ୍ରଣୟନ କରାଯାଇଛି । କେବଳ ଆଇନ ନୁହେଁ, ଅନେକ ଯୋଜନାମାନ ମଧ୍ୟ କରାଯାଇଛି । ଅସଂଗଠିତ ଶ୍ରମିକମାନଙ୍କ ପାଇଁ ୨୦୦୮ରେ ହୋଇଥିବା ଆଇନ (Unorganised social security Act) ଅଧୀନରେ ରାଷ୍ଟ୍ରିୟ ସ୍ୱାସ୍ଥ୍ୟବୀମା ଯୋଜନା କାର୍ଯ୍ୟକାରୀ ହେଉଛି । ଅବଶ୍ୟ ଏହା ବର୍ତ୍ତମାନ ସୁଦ୍ଧା ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବର୍ଗପାଇଁ ଅଭିପ୍ରେତ । ଅନେକ କେନ୍ଦ୍ରୀୟ ସହାୟତା ଥାଇ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ଯଥା ଭାରତୀୟ ପରିବାର ସହାୟତା ଯୋଜନା (NFBS) ୧୯୯୫ରୁ କାର୍ଯ୍ୟକାରୀ ହେଉଛି, ଏହା ମଧ୍ୟ ଦାରିଦ୍ର୍ୟ ସିମାରେଖା ଭିତରେ ଅଟକିଛି । ଅସଂଗଠିତ ଶ୍ରମିକମାନଙ୍କ ଉଦ୍ଦେଶ୍ୟରେ ଲାଗୁହୋଇ ନଥାଏ । କେନ୍ଦ୍ର ଓ ରାଜ୍ୟ ସରକାର ଦିନକୁ ଦିନ ଅନେକ ଆଇନ ଓ ଯୋଜନା ପ୍ରସ୍ତୁତ କରି ଚାଲିଛନ୍ତି । ଏଥିରେ କେବଳ ଯେ ପ୍ରବର୍ତ୍ତିତ ଯୋଜନାମାନଙ୍କରେ ପ୍ରଚୁର ଅର୍ଥବରାଦ କରାଯାଉଛି ତା' ନୁହେଁ, ଅଧିକରୁ ଅଧିକ ସାମାଜିକ ସୁରକ୍ଷା ଉଦ୍ଦେଶ୍ୟରେ ସହାୟତାମାନ ପ୍ରଦାନ କରାଯାଇ ଆସୁଛି । କିନ୍ତୁ ସେ ସବୁ ସହାୟତା ବା ରିହାତି ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ବୋଲି ସର୍ବଜନ ବିଦିତ । ଏଥିରେ ଅସଂଗଠିତ ଶ୍ରମିକବର୍ଗର ପ୍ରତ୍ୟକ୍ଷ ସଂପର୍କ ଆଦୌ ନାହିଁ ।

ସାମାଜିକ ନିରାପତ୍ତାର ଆବଶ୍ୟକତା ଅଧିକରୁ ଅଧିକ ମନେ ହେଉଛି ଯେତେବେଳେ ସବୁ କ୍ଷେତ୍ରରେ ଏପରିକି ସରକାରୀ ଚାକିରୀ କ୍ଷେତ୍ରରେ ସ୍ଥାୟୀ ନିଯୁକ୍ତି

ଅପେକ୍ଷା ଅସ୍ଥାୟୀ ନିଯୁକ୍ତି ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । କଳକାରଖାନାରେ କଣ୍ଟ୍ରାକ୍ଟ ଚାକିରୀରୁ ଚାକିରୀରେ ଥିବା ମଜୁରିଆଙ୍କୁ ସ୍ଥାୟୀ କରିବା ନିମନ୍ତେ ହୋଇଥିବା ଆଇନ (The contract labour) Regulation and abolition Act-1970) ଅଦରକାରୀ ଓ ଅନାବଶ୍ୟକ ମନେହେଉଛି । ପୂର୍ବରୁ ରହି ଆସିଥିବା ଆଇନଗୁଡ଼ିକ ଯଥା ଗ୍ରାଚ୍ୟୁଇଟି ଆକ୍ଟ, ବୋନସ ଆକ୍ଟ, ପ୍ରୋଭିଡେଣ୍ଟ ଫଣ୍ଡ ଆକ୍ଟ ଓ ଅନ୍ୟାନ୍ୟ ଅବସରକାଳୀନ ସୁବିଧା ସୁଯୋଗ ରହିତ ହେବାର ଦେଖାଯାଇଛି । ସେହି ସମୟରେ ଅସଂଗଠିତ ଅଗଣିତ ଖଟିଖିଆ ଶ୍ରମଜୀବୀମାନଙ୍କୁ ସୁରକ୍ଷା ଦେବାର ବ୍ୟବସ୍ଥା ସବୁ ଆଣିବାକୁ ହେବ ।

✿✿✿

# ସାମାଜିକ ନିରାପତ୍ତା ଆଇନ ଓ ଅସଂଗଠିତ ଶ୍ରମିକ

ସଂବିଧାନରେ ସାମାଜିକ ନିରାପତ୍ତା ସଂପର୍କିତ ଯେଉଁସବୁ ଧାରା ରହିଛି ସେଥିମଧ୍ୟରେ ଧାରା-୨୧ ହେଉଛି ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଏହି ଧାରା ପ୍ରତ୍ୟେକ ବ୍ୟକ୍ତିପାଇଁ ଗୋଟିଏ ମର୍ଯ୍ୟାଦାପୂର୍ଣ୍ଣ ଜୀବନଯାପନ କରିବାର ସ୍ୱୀକୃତି ଦେଉଛି । ମାନ୍ୟବର ସୁପ୍ରିମକୋର୍ଟ ମଧ୍ୟ ଏହି ଧାରାର ତର୍ଜମା କରିବାକୁ ଯାଇ ପ୍ରତ୍ୟେକ ବ୍ୟକ୍ତିର ଶିକ୍ଷା, ସ୍ୱାସ୍ଥ୍ୟ, ଆପଦକାଳୀନ ବା ଦୁର୍ଘଟଣା ଜନିତ କ୍ଷୟକ୍ଷତି ଭରଣା ଆଦି ସହିତ ବାର୍ଦ୍ଧକ୍ୟକାଳୀନ ଭତ୍ତାକୁ ଯୋଡ଼ି ଦେଇଛନ୍ତି । ସଂବିଧାନର ଧାରା ୧୫, ୧୬ ଓ ୨୩ ମଧ୍ୟ ସମତା ତଥା ମଜୁରିଯୁକ୍ତ ଖଟଣି ସଂପର୍କରେ କହିଥାଏ ।

ଏତଦ୍‌ବ୍ୟତୀତ ସାଂବିଧାନରେ ଥିବା ଡାଇରେକ୍ଟିଭ୍ ପ୍ରିନ୍‌ସପୁଲ୍ସ୍ ଅଫ୍‌ଷ୍ଟେଟ୍ସ୍(Directive Principles of states) ଅଧ୍ୟାୟରେ ଥିବା ଧାରା ୩୯, ଧାରା ୨୪, ଧାରା ୪୧, ଧାରା ୪୩ ଆଦି ଭାରତୀୟମାନଙ୍କର ସାମାଜିକ, ଆର୍ଥିକ ନିରାପତ୍ତା ସଂପର୍କରେ ସୂଚନା ଦେଇଥାଏ ।

ସଂବିଧାନ ପ୍ରଣୟନ ପୂର୍ବରୁ ଇଂରେଜ ଶାସନ ସମୟରେ ଫାଟାଲ(Fatal Accident Act. - 1855) ଆକ୍ସିଡେଣ୍ଟ ଆକ୍ଟ ୧୮୫୫, ଫ୍ୟାକ୍ଟରୀଜ୍ ଆକ୍ଟ ୧୮୮୦ (Factories Act.-1880) ୱାର୍କମେନ କମ୍ପନ୍‌ସେସନ ଆକ୍ଟ ୧୯୨୩ (Worker Compensation Act.-1923) ପ୍ରଭୃତି ପ୍ରଚଳିତ ହୋଇଥିଲା । ମାତ୍ର ଏହାସବୁ ମୁଖ୍ୟତଃ ସଂଗଠିତ ଶ୍ରମିକମାନଙ୍କୁ ସହାୟତା ଦେବାପାଇଁ ଉଦ୍ଦିଷ୍ଟ ଥିଲା । ସ୍ୱାଧୀନତା ପରେ ଭାରତରେ ୧୯୪୮ରେ ସର୍ବନିମ୍ନ ମଜୁରି ଆଇନ ପ୍ରଣୟନ ହୋଇ ଅସଂଗଠିତ ଶ୍ରମିକଙ୍କୁ ମଜୁରି ନିରାପତ୍ତା ଦେବାର ବ୍ୟବସ୍ଥା କରାଗଲା ।

ଇଂରେଜ ସରକାର ଥିବାବେଳେ କଳକାରଖାନାର ଶ୍ରମିକମାନଙ୍କ ସ୍ୱାସ୍ଥ୍ୟବୀମା ପାଇଁ ଗୋଟିଏ କମିଟି ପ୍ରଫେସର ବି.ଆର. ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଗଠିତ କରିଥିଲେ । ଏହା ଆଧାରରେ ୧୯୪୮ରେ ଏମ୍ପ୍ଲୟାନ୍ ଷ୍ଟେଟ୍ ଇନ୍‌ସ୍ୟୁରାନ୍‌ସ ଆଇନ୍ ୧୯୪୮ ହେଲା ଏବଂ ୧୯୫୭ରେ ଏମ୍ପ୍ଲୟିଜ୍ ପ୍ରୋଭିଡେଣ୍ଟ ଫଣ୍ଡ ଆଇନ୍ ପ୍ରସ୍ତୁତ ହେଲା ପରେ ପରେ କୋଇଲା ଖଣି ଶ୍ରମିକ, ଚା ବଗିଚାର ଶ୍ରମିକ ଆଦିଙ୍କ ପାଇଁ

ଆଇନ ପ୍ରଣୀତ ହେଲା ଓ ୧୯୬୧ରେ ମାଟରନିଟି ବେନିଫିଟ୍ ଆକ୍ଟ ଓ ୧୯୮୬ ଶିଶୁ ସୁରକ୍ଷା ଆଇନ୍ ପ୍ରଣୀତ ହେଲା । କିନ୍ତୁ ଅସଂଗଠିତ ଶ୍ରମିକମାନଙ୍କୁ ସୁରକ୍ଷା ବା ନିରାପତ୍ତା ଦେବା ନିମନ୍ତେ କୌଣସି ଆଇନ୍ ସ୍ୱତନ୍ତ୍ର ଓ ପୂର୍ଣ୍ଣାଙ୍ଗଭାବେ ପ୍ରସ୍ତୁତ ହେଲାନାହିଁ । ପୂର୍ଣ୍ଣ ସାମାଜିକ ନିରାପତ୍ତା ପ୍ରଦାନ କରିବା ନିମନ୍ତେ ରାଜ୍ୟ ଓ କେନ୍ଦ୍ର ସରକାର ଅନେକ ଯୋଜନା କାର୍ଯ୍ୟକାରୀ କରି ଆସିଛନ୍ତି । ଏଥିରେ ସେହିସବୁ ସୁବିଧା ସୁଯୋଗ ମିଳିଥାଏ ।

ଶ୍ରମିକ ସଂଗଠନମାନଙ୍କର ଅନେକ ଚାପ ଫଳରେ ୧୯୯୮ ମସିହାରେ ଶ୍ରୀ ରବୀନ୍ଦ୍ର ବର୍ମାଙ୍କ ଅଧ୍ୟକ୍ଷତାରେ ଦ୍ୱିତୀୟ ଜାତୀୟ ଶ୍ରମ କମିଶନ (The Second National Commission on Labour) ଗଠିତ ହେଲା । ପ୍ରଥମ କମିଶନ ୧୯୬୯ ମସିହାରେ ସ୍ୱର୍ଗତ ଗଜେନ୍ଦ୍ର ଗଡ଼କରଙ୍କ ଅଧ୍ୟକ୍ଷତାରେ ଗଠିତ ହୋଇଥିଲା । ଦ୍ୱିତୀୟ କମିଶନ ଅନେକ ଦୃଷ୍ଟିରୁ ପ୍ରଥମ କମିଶନ ଠାରୁ ପୃଥକ ଥିଲା; ଯେଉଁଥିରେ ସାମାଜିକ ନିରାପତ୍ତା ଉପରେ ଅଧିକ ଗୁରୁତ୍ୱ ଦିଆ ଯାଇଥିଲା । ଚଉଦଶହ ପଚାଶ ପୃଷ୍ଠା ବିଶିଷ୍ଟ ଏହି ରିପୋର୍ଟ ୨୦୦୨ ମସିହାରେ କେନ୍ଦ୍ର ସରକାରଙ୍କୁ ଦିଆଯାଇଥିଲା । ଏହି ରିପୋର୍ଟରେ ଅଷ୍ଟମ ଅଧ୍ୟାୟରେ ଶ୍ରମିକମାନଙ୍କର ସାମାଜିକ ନିରାପତ୍ତା ସଂପର୍କରେ ବିସ୍ତୃତ ଆଲୋଚନା ହୋଇଥିଲା । ଅସଂଗଠିତ ଶ୍ରମିକମାନଙ୍କ ପାଇଁ ଗୋଟିଏ ୱେଲଫେୟାର ବୋର୍ଡ଼ ଗଠନର ପ୍ରସ୍ତାବ ଦିଆଯାଇ ଥିଲା । ଆହୁରିମଧ୍ୟ ଗୋଟିଏ ଶ୍ରମ ମଙ୍ଗଳ ପାଣ୍ଠି ଗଠନ କରାଯିବାର ପରାମର୍ଶ ଦିଆଗଲା । ଏହି ପାଣ୍ଠିରେ ଶ୍ରମିକର ଅଂଶ, ନିଯୁକ୍ତିକାରୀର ଅଂଶ ଓ ସରକାରଙ୍କର ଏକ ବୃହତ୍ ଅଂଶ ରହିବାର ପରାମର୍ଶ ଦିଆ ଯାଇଥିଲା । ପାଣ୍ଠି ପୁଞ୍ଜିଗଠନ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ଶୁଳ୍କଧାର୍ଯ୍ୟ ପାଇଁ ଏହି ପାଣ୍ଠିକୁ ସୋସିଆଲ ସିକ୍ୟୁରିଟ୍ ସ୍କିମ୍‌ରେ ସଂଯୋଗ କରିବାର ପରାମର୍ଶ ଦିଆଯାଇଥିଲା ।

ସାମାଜିକ ନିରାପତ୍ତା ପାଣ୍ଠିରୁ ବିନିଯୋଗ ହୋଇ (କ) ସମସ୍ତ ଯୋଜନା ସ୍ୱଚ୍ଛ ଓ ବ୍ୟାପକ କରାଯିବା(ଖ) ଏହି ସ୍କିମ ଆଞ୍ଚଳିକ ଭିତ୍ତିରେ ଓ ଆଞ୍ଚଳିକ ଆବଶ୍ୟକତା ଭିତ୍ତିରେ ହେବା (ଗ) ରିହାତି ସହିତ ବିଭିନ୍ନ ବୀମା ପ୍ରଚଳନ ଅର୍ଥାତ୍ ବୀମାର ପ୍ରିମିୟମ୍ ଯେପରି ଶ୍ରମିକପାଇଁ ସହନୀୟ ହୁଏ, ସେଥିପ୍ରତି ଦୃଷ୍ଟିଦେବା ଉପରେ ଦ୍ୱିତୀୟ ଶ୍ରମ କମିଶନ ଗୁରୁତ୍ୱ ଦେଇଥିଲେ । କିନ୍ତୁ ଏହା ପୂର୍ବରୁ ୧୯୯୫ ମସିହାରେ ସର୍ବସାଧାରଣଙ୍କ ନିମନ୍ତେ କେନ୍ଦ୍ର ସରକାର ଜାତୀୟ ସାମାଜିକ ସହାୟତା କାର୍ଯ୍ୟକ୍ରମ (National Social Assistance Programme) ଆରମ୍ଭ କରି ସାରିଥିଲେ । ମାତ୍ର

ଅସଂଗଠିତ ଶ୍ରମିକମାନଙ୍କ ପାଇଁ ୨୦୦୮ ମସିହାରେ ବିଧିବଦ୍ଧ ଭାବେ ଗୋଟିଏ ଆଇନ୍ ପ୍ରଣୀତ (The Unorganised workers' social security Act.-2008) ହେଲା । ଏହି ଆଇନ ପ୍ରଣୟନ ସମୟରେ ଯେଉଁ ସଂକଳ୍ପ ଉପସ୍ଥାପିତ ହୋଇଥିଲା ସେଥିରେ ମୁଖ୍ୟତଃ କେନ୍ଦ୍ର ସରକାର ଅସଂଗଠିତ ଶ୍ରମିକଙ୍କ ପାଇଁ ଗୋଟିଏ ସର୍ବଭାରତୀୟ ଉପଦେଷ୍ଟା ବୋର୍ଡ଼ (National Social Security Advisory Board) ଗଠନ କରିବା ଓ ରାଜ୍ୟ ସରକାରମାନେ ନିଜ ନିଜ ରାଜ୍ୟପାଇଁ ସ୍ୱତନ୍ତ୍ର ବୋର୍ଡ଼ ଗଠନ କରିବା, ଅସଂଗଠିତ ଶ୍ରମିକମାନଙ୍କୁ ପଞ୍ଜିକୃତ କରିବା ଓ ସେମାନଙ୍କୁ ପରିଚୟ ପତ୍ର ଦେବା ଆଦି ଲକ୍ଷ୍ୟ ରହିଥିଲା ।

ଏହି ଆଇନ୍‌ରେ (ଦ୍ୱିତୀୟ ଅଧ୍ୟାୟ) ଯେଉଁସବୁ ସ୍କିମ୍ ସଂପର୍କରେ ସୂଚିତ ହେଲା ସେଥି ମଧ୍ୟରେ (୧)ଜୀବନ ଓ ଶାରୀରିକ କ୍ଷୟକ୍ଷତି ଭରଣା, (୨) ସ୍ୱାସ୍ଥ୍ୟ ନିରାପତ୍ତା, (୩) ଜନ୍ମଦାତ୍ରୀ ମା'ର ସୁରକ୍ଷା, (୪)ବାର୍ଦ୍ଧକ୍ୟକାଳୀନ ସହାୟତା ଆଦି ରହିଲା । ଏହାକୁ ଅଧିକ ସ୍ପଷ୍ଟ କରିବାକୁ ଯାଇ ରାଜ୍ୟସରକାର ପ୍ରୋଭିଡେଣ୍ଟ ଫଣ୍ଡ ସୃଷ୍ଟି କରିବା, କାର୍ଯ୍ୟରତ ସମୟରେ ଦୂର୍ଘଟଣା ଜନିତ କ୍ଷୟକ୍ଷତି ଭରଣା କରିବା, ବାସଗୃହ ଯୋଗାଣ, ଶ୍ରମିକଙ୍କ ପିଲାଙ୍କୁ ଶିକ୍ଷା ଦେବା ବ୍ୟବସ୍ଥା, ଶ୍ରମିକମାନଙ୍କୁ କୁଶଳୀ କରିବା ନିମନ୍ତେ ଶିକ୍ଷା ଦେବା, ମୃତ୍ୟୁକାଳୀନ ଶ୍ମଶାନ କାର୍ଯ୍ୟର ସହାୟତା, ଜରାନିବାସ ଯୋଗାଇ ଦେବା ଆଦି କୁହାଗଲା ।

ଏହି କାର୍ଯ୍ୟକ୍ରମ ଋଲୁ ରଖିବା ନିମନ୍ତେ କେନ୍ଦ୍ର ଓ ରାଜ୍ୟ ସରକାର ଏବଂ ନିଯୁକ୍ତିକାରୀ ବ୍ୟକ୍ତି ବା ସଂସ୍ଥାର ଅଂଶ ପ୍ରଦାନ ଥାଇ ସଂଗଠିତ ପୁଞ୍ଜିରୁ ବିନିଯୋଗ ହେବା ବ୍ୟବସ୍ଥା ଆଇନରେ ନିର୍ଦ୍ଦେଶିତ ହେଲା ।

ଯେଉଁସବୁ କାର୍ଯ୍ୟକ୍ରମ ଆରମ୍ଭ ହେଲା ସେଥିମଧ୍ୟରେ ମୁଖ୍ୟତଃ (୧) ଇନ୍ଦିରାଗାନ୍ଧି ଜାତୀୟ ବାର୍ଦ୍ଧକ୍ୟଭତ୍ତା ଯୋଜନା (୨) ଜାତୀୟ ପରିବାର ସୁବିଧା ଯୋଜନା (National Family Benefit Scheme) (୩) ଜନନୀ ସୁରକ୍ଷା ଯୋଜନା, (୪) ହସ୍ତତନ୍ତ କୁଶଳୀଙ୍କ ପାଇଁ ଯୋଜନା, (୫) କୁଟୀରଶିଳ୍ପରେ ନିଯୋଜିତ ଶ୍ରମଜୀବୀଙ୍କ ପାଇଁ ଯୋଜନା, (୬) କାରୀଗରଙ୍କ ପାଇଁ ଭତ୍ତା ଯୋଜନା(Pension to master Craft) (୭) ଜନଶ୍ରୀ ବୀମା ଯୋଜନା (୮) ମତ୍ସ୍ୟଜୀବୀମାନଙ୍କ ପାଇଁ ଯୋଜନା, (୯) ଆମ୍ ଆଦ୍‌ମୀ ବୀମା ଯୋଜନା, (୧୦) ରାଷ୍ଟ୍ରୀୟ ସ୍ୱାସ୍ଥ ବୀମା ଯୋଜନା ରହିଲା ।

ଦେଶରେ ନରେନ୍ଦ୍ରମୋଦିଙ୍କ ସରକାର ଆସିବା ପରେ କେତେକ ଯୋଜନାର ନାମ ବଦଳାଇଛନ୍ତି ସତ, ହେଲେ ସେପରିକିଛି ଦୃଷ୍ଟାନ୍ତମୂଳକ ସାହାଯ୍ୟକାରୀ ସହାୟତା ଘୋଷଣା କରି ନାହାନ୍ତି ।

ଉପା ସରକାର ସମୟରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଆଇନ ପ୍ରଣୟନ କରାଯାଇଥିଲା । ତାହା ହେଉଛି ନିର୍ମାଣ ଶ୍ରମିକମାନଙ୍କର ପାଇଁ । ଏଥିରେ ଏହି ଶ୍ରମିକମାନଙ୍କୁ ସାମାଜିକ ନିରାପତ୍ତା ଦେବାର ବ୍ୟବସ୍ଥା ରହିଛି ।

ରାଜ୍ୟ ସରକାରମାନେ ମଧ୍ୟ ନିଜ ନିଜର ସ୍କିମ୍ ମାନ କରିଛନ୍ତି । ଓଡ଼ିଶା ସରକାର ମଧୁସୂଦନ ପେନ୍‌ସନ୍ ଯୋଜନା, ମମତା ଯୋଜନା, ଆହାର ଯୋଜନା, ସ୍କୁଲ୍ ଛାତ୍ରଛାତ୍ରୀମାନଙ୍କୁ ସାଇକେଲ ପ୍ରଦାନ ଯୋଜନା ଆଦି ଏହି ଅସଂଗଠିତ ଶ୍ରମିକଙ୍କୁ ପରୋକ୍ଷଭାବେ ସହାୟତା ଦେବା ନିମନ୍ତେ କାର୍ଯ୍ୟକାରୀ କରିଛନ୍ତି ।

ଯେଉଁସବୁ ସହାୟତାକାରୀ ଯୋଜନା ପ୍ରଣୟନ କରାଯାଇଛି ସେଥିମଧ୍ୟରେ ମୁଖ୍ୟତଃ ଖାଦ୍ୟ ନିରାପତ୍ତା ଯୋଜନା ରହିଛି ଓ କର୍ମ ଅଧିକାର ଆଇନ ରହିଛି । ଶିକ୍ଷା ଅଧିକାର ଆଇନ ବଳରେ ମାଗଣାରେ ୧୪ବର୍ଷ ପର୍ଯ୍ୟନ୍ତ ଶିକ୍ଷାଦେବା ଗୋଟିଏ ପ୍ରକାରର ସାମାଜିକ ନିରାପତ୍ତା ବ୍ୟବସ୍ଥା କରାଯାଇଛି । ସ୍ୱାସ୍ଥ୍ୟ କ୍ଷେତ୍ରରେ ରାଜ୍ୟସରକାର ମଧ୍ୟ ମାଗଣାରେ ପାଖାପାଖି ୩୫୦ ଗୋଟି ଔଷଧ ଦେବା ବ୍ୟବସ୍ଥା କରିଛନ୍ତି । ଏହି ଯୋଜନାର ନାମ ହେଉଛି 'ନିରାମୟ' । ଏସବୁ ବ୍ୟତୀତ କେନ୍ଦ୍ର ସରକାର ପ୍ରଧାନମନ୍ତ୍ରୀ ବୀମା ଜ୍ୟୋତି ଯୋଜନା ଓ ଅଟଳ ପେନ୍‌ସନ୍ ଯୋଜନା କାର୍ଯ୍ୟକାରୀ କରିଛନ୍ତି ।

ମୋଟାମୋଟି ଭାବେ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଅନେକ ନିରାପତ୍ତା ଯୋଜନା କରିଛନ୍ତି; ଯେଉଁଥିରେ ପରୋକ୍ଷଭାବେ ଅସଂଗଠିତ ଶ୍ରମିକ, କୃଷି ଶ୍ରମିକ, କୃଷକବର୍ଗ ଅନ୍ତର୍ଭୁକ୍ତ ଅଛନ୍ତି । କିନ୍ତୁ ଏହାସବୁ ସାର୍ବଜନୀନ ଢାଞ୍ଚା (Universal approach) ରେ ନହୋଇ, ଦାରିଦ୍ର୍ୟ ସୀମାରେଖା ଆଧାର ବା କମ୍ ।

ନିର୍ମାଣ ଶ୍ରମିକ ଆଇନ ପରିସର ମଧ୍ୟରେ ଅନେକ ବର୍ଗର ଶ୍ରମିକ ଆସିଥାନ୍ତି । ରାଜମିସ୍ତ୍ରୀ, ମୂଲିଆ, କାଠ କାରିଗର, ରଙ୍ଗମିସ୍ତ୍ରୀ ଆଦି ଏହି ବର୍ଗର ଅନ୍ତର୍ଭୁକ୍ତ । ନିର୍ମାଣ ଶ୍ରମିକମାନଙ୍କ ପାଇଁ ହୋଇଥିବା ୧୯୯୬ର କେନ୍ଦ୍ରୀୟ ଆଇନ ଅନେକ ଦୃଷ୍ଟିରୁ ପ୍ରଣିଧାନ ଯୋଗ୍ୟ ଓ ସ୍ୱାଗତଯୋଗ୍ୟ । ବିଭିନ୍ନ ପ୍ରକାର ନିର୍ମାଣ କାର୍ଯ୍ୟରେ ନିୟୋଜିତ ଶ୍ରମିକମାନଙ୍କୁ ପଞ୍ଜିକୃତ କରି କାର୍ଯ୍ୟସର୍ତ୍ତାବଳୀ, ମଜୁରୀ ନିରାପତ୍ତା ସହିତ ଓ ଅନ୍ୟାନ୍ୟ ସାମାଜିକ ନିରାପତ୍ତା ଦୁର୍ଘଟଣା ଜନିତ ନିରାପତ୍ତା ଓ ଅନେକ ସୁବିଧା ସୁଯୋଗ ଯଥା

ସାଇକେଲ, ଛତା ଆଦି ପ୍ରଦାନର ବ୍ୟବସ୍ଥା କରାଯାଇଛି । ଏହି ଶ୍ରମିକ ବର୍ଗର ପରିସର ବୃଦ୍ଧି ରାଜ୍ୟ ସରକାରମାନେ ସ୍ଥାନୀୟ ସ୍ଥିତି ନେଇ କରିଛନ୍ତି ଓ ସହାୟତା ମଧ ବଢ଼େଇଛନ୍ତି । ଅସଂଗଠିତ ଶ୍ରମିକ କ୍ଷେତ୍ରରେ ଏହା ହେଉଛି ଏକ ବଳିଷ୍ଠ ପଦକ୍ଷେପ । କିନ୍ତୁ ପଞ୍ଜିକୃତ ବ୍ୟବସ୍ଥାର ଜଟିଳତା ଚିହ୍ନଟ ପ୍ରକ୍ରିୟାରେ ଦ୍ୱନ୍ଦ୍ୱ ଓ ସାହାଯ୍ୟ ବଣ୍ଟନରେ ସୀମିତ ବ୍ୟବସ୍ଥା ସହିତ ପକ୍ଷପାତିତା, ସଂପୂର୍ଣ୍ଣ ବ୍ୟବସ୍ଥାଟିକୁ କର୍ଦ୍ଦମାକ୍ତ କରି ଦେଇଛି । ରାଜ୍ୟରେ ପ୍ରଚଳିତ ସମସ୍ତ ଆଇନ ବ୍ୟବସ୍ଥା ଅସଂଗଠିତ ଶ୍ରମିକମାନଙ୍କୁ ସୁରକ୍ଷା ଦେବା ନିମନ୍ତେ ଉଦ୍ଦିଷ୍ଟ । ଦେଶରେ ମାତ୍ର କେତେଗୁଡ଼ିଏ ମୌଳିକ ବ୍ୟବସ୍ଥା ଯଥା ସ୍ୱାସ୍ଥ୍ୟବୀମା, ଦୁର୍ଘଟଣା ବୀମା, ଜୀବନ ବୀମା, ପରିବାରରର ସଦସ୍ୟମାନଙ୍କୁ ରଖାଯାଇ ମୋଟା ଅଂକର ହେବା ଦରକାର । କାରଣ ଗୋଟିଏ ମଜୁରୀଆ ପରିବାର ତା'ର ଚିକିତ୍ସା ଖର୍ଚ୍ଚ ତୁଲାଇବାକୁ ଆଦୌ ସକ୍ଷମ ହୋଇ ନଥାଏ । ଅଧିକନ୍ତୁ ରୋଜଗାରକ୍ଷମ ବ୍ୟକ୍ତିଟିର ମୃତ୍ୟୁ ଘଟିଲେ ସମଗ୍ର ପରିବାର ଆର୍ଥିକ ଅନାଟନ ଭିତରକୁ ଠେଲି ହୋଇ ଯାଇଥାଏ ।ଅନେକ ସମୟରେ ଦେଖିବାକୁ ମିଳେ ଯେ ଅଣପଞ୍ଜିକୃତ ମୂଲିଆ ମଜୁରିଆ ଡାକ୍ତରଖାନାରେ ଚିକିତ୍ସାବେଳେ ଅନେକଭାବେ ଶୋଷଣର ଶୀକାର ହୋଇଥାନ୍ତି । ଅର୍ଥ ପୈଠ ନକଲେ ବନ୍ଧା ପଡ଼ି ରୁହନ୍ତି । ଏପରି ଅକଥନୀୟ ବ୍ୟବସ୍ଥା ପ୍ରାୟତଃ ସର୍ବତ୍ର ଦେଖିବାକୁ ମିଳିଥାଏ । ସେଥିପାଇଁ ଚିକିତ୍ସା ବୀମା ସମସ୍ତ ପରିବାର ପାଇଁ ଅନ୍ତତଃପକ୍ଷେ ଅଧିକ ଅର୍ଥ ଲାଗୁଥିବା ରୋଗ ନିମନ୍ତେ ମୋଟାଅଙ୍କର ହେବା ଦରକାର । ଏହା ସାର୍ବଜନୀନ ହେଲେକେହି ବାଦ୍ ପଡ଼ିବେ ନାହିଁ । ଜନ୍-ଧନ-ଯୋଜନା ଓ ଆଧାର କାର୍ଡ଼ ପ୍ରବର୍ତ୍ତନ ସମସ୍ତଙ୍କୁ ପଞ୍ଜୀକୃତ ଓ ସହାୟତା ଦେବାର ପଥ ସୁଗମ କରିଛି - ଏଥି ସହିତ ଅବସରକାଳୀନ ଭତ୍ତା ବା ବାର୍ଦ୍ଧକ୍ୟଭତ୍ତା ୬୦ବର୍ଷରୁ ଉର୍ଦ୍ଧ୍ୱ ସମସ୍ତଙ୍କ ପାଇଁ, ଗୋଟିଏ ଉଚ୍ଚକୁଶଳୀ ଶ୍ରମିକ ପାଇଁ ଉଦ୍ଦିଷ୍ଟ ମଜୁରୀର ଅର୍ଦ୍ଧେକ ହାରରେ ମାସକୁ ମିଳିବା ଦରକାର ।

✿✿✿

# ଅସଂଗଠିତ ଶ୍ରମିକ ଓ ବାର୍ଦ୍ଧକ୍ୟକାଳୀନ ନିରାପତ୍ତା

ସବୁ ବ୍ୟକ୍ତି ଗୋଟିଏ ବୟସ ଅତିକ୍ରମ କଲେ କାର୍ଯ୍ୟ କରିବାର କ୍ଷମତା ହରାଇ ଆସିଥାଏ । ଫଳତଃ ତା'ର ଉପାର୍ଜନ କ୍ଷମତା କମିଯାଇଥାଏ ଓ ଗୋଟିଏ ସମୟରେ ପୂରା ବନ୍ଦ ହୋଇଯାଏ । ଏପରିସ୍ଥଳେ ସେ ବଞ୍ଚିବାପାଇଁ ପରିବାରର ଅନ୍ୟମାନଙ୍କ ଉପାର୍ଜନ ଉପରେ ନିର୍ଭରଶୀଳ ହୋଇଯାଏ । ଆଗେ ଋଷ ଓ ଆନୁସାଂଗିକ ବ୍ୟବସ୍ଥା ଗୋଟିଏ ପରିବାରର ଯୌଥ ସହଯୋଗରେ ଗଢ଼ି ଉଠିଥିଲା । ଏବେ ସେପରି ବ୍ୟବସ୍ଥା ଭାଙ୍ଗି ଯାଇଛି । 'ଶ୍ରମିକଶ୍ରେଣୀ'ର ଅଧିକାଂଶ ଗୋଟିଏ ଗୋଟିଏ ଆୟ ଉପରେ ନିର୍ଭରକରି ପରିବାର ଚଳାଇଥାନ୍ତି । ଆର୍ଥିକ ନିଅଣ୍ଟ ହିଁ ପାରିବାରିକ ବିଶୃଙ୍ଖଳାର କାରଣ ହୋଇଥାଏ । ଶାଶୁ - ବୋହୂ-ନଣନ୍ଦ ଝଗଡ଼ାର ଏକ ମୁଖ୍ୟ କାରଣ ହୁଏ, ପରିବାରରେ ବାପ-ମା' ଅବହେଳାର ଶୀକାର ହେବା ଦେଖାଯାଏ ।

ସରକାରୀ ଋକିରୀରେ ଥିବା ପ୍ରତ୍ୟେକ ବ୍ୟକ୍ତି ଏବଂ ନିର୍ଦ୍ଦିଷ୍ଟ ବୟସପରେ ଅର୍ଥାତ୍ ୫୮ ବା ୬୦ ବା ୬୨ ବର୍ଷପରେ ବାର୍ଦ୍ଧକ୍ୟକାଳୀନ ଭତ୍ତା ପାଇଥାନ୍ତି । ଏଥିରେ ଶିକ୍ଷକ, ଅଧ୍ୟାପକ ଶ୍ରେଣୀ ମଧ୍ୟ ଅନ୍ତର୍ଭୁକ୍ତ । ଏପରିକି ସାଂସଦ, ବିଧାୟକମାନେ ମଧ୍ୟ ଅବସରକାଳୀନ ଭତ୍ତା ପାଇଥାନ୍ତି । ଏମାନଙ୍କ ଭତ୍ତା ମୋଟା ଅଙ୍କର ଥାଏ । ଅବସର ନେଉଥିବା ପୂର୍ବମାସର ଦରମାର ଅର୍ଦ୍ଧେକ ସହିତ ମହଙ୍ଗାଭତ୍ତା ମିଶି ଏହି ପେନ୍‌ସନ୍ ଧାର୍ଯ୍ୟ ହୋଇଥାଏ । ଏଥିସହିତ ପ୍ରୋଭିଡେଣ୍ଟ ଫଣ୍ଡ ଓ ଗ୍ରାଚ୍ୟୁଇଟିର ବ୍ୟବସ୍ଥା ଅଛି । କଳକାରଖାନାର ଶ୍ରମିକମାନଙ୍କ ପାଇଁ ବାର୍ଦ୍ଧକ୍ୟକାଳୀନ ନିରାପତ୍ତା ବ୍ୟବସ୍ଥା ଯଥା ଗ୍ରାଚ୍ୟୁଇଟି, ପ୍ରୋଭିଡେଣ୍ଟ ଫଣ୍ଡ (ଇ.ପି.ଏଫ୍.) ସହିତ ମାସକୁ ଅତିକମ୍‌ରେ ଏକ ହଜାର ଟଙ୍କା ଭତ୍ତା ଦେବାର ବ୍ୟବସ୍ଥା ରହିଛି ।

ହେଲେ ଅସଂଗଠିତ ଶ୍ରମିକମାନେ ବାର ଚଉଦବର୍ଷରୁ କଠିନ ପରିଶ୍ରମ କରି ଷାଠିଏ, ବା'ଷଠି ବର୍ଷ ପର୍ଯ୍ୟନ୍ତ ଖଟି ଋଲନ୍ତି । ଖଟୁଥିବା ଦିନର ମଜୁରୀ ଯାହା ପାଇଥାନ୍ତି । ଯେଉଁଦିନ ଖଟଣୀ ସରେ ବା ସାମର୍ଥ୍ୟ କମେ ସେ ବସ୍ତୁତଃ ଭିକାରୀ ପାଲଟି ଯା'ନ୍ତି । ଘରେ ଥିବା ମହିଳାମାନଙ୍କର ଅବସ୍ଥା ଅଧିକ ଖରାପ । ଔଷଧ ଟିକେ ବା ପଥ୍ୟ ଖାଇବାକୁ ପା'ନ୍ତି ନାହିଁ । ଏହି ବର୍ଗ ଭିତରେ ଋଷୀ, କ୍ଷୁଦ୍ରଋଷୀ, ନାମମାତ୍ର

ଋଷୀ ଓ ଋଷୀମୂଲିଆ ଅନ୍ୟାନ୍ୟ ବର୍ଗ (କୁମ୍ଭାର, କମାର, ତନ୍ତୀ, କ୍ଷୁଦ୍ର ଦୋକାନୀ ଆଦି) ଅନ୍ତର୍ଭୁକ୍ତ ।

ଏମାନଙ୍କ ପାଇଁ ଖାଲି ଯାହା ସାମାଜିକ ନିରାପତ୍ତା ସାହା ହୋଇଥାଏ । ସାର୍ ୱିଲିୟମ୍ ବେଭେରିଜ୍ ୧୯୪୨ରେ ପ୍ରଦତ୍ତ ରିପୋର୍ଟରେ ଅବସରକାଳୀନ ଭତ୍ତାର କଥା ଉତ୍ଥାପନ କଲେ; ହେଲେ ଏହା ସଂଗଠିତ ବର୍ଗ ପାଇଁ ଉଦ୍ଦିଷ୍ଟ ଥିଲା ।

ଏହା ପୂର୍ବରୁ ଇଂରେଜ ସରକାର ୧୯୦୮ରେ ବାର୍ଦ୍ଧକ୍ୟକାଳୀନ ପେନ୍‌ସନ୍ ବ୍ୟବସ୍ଥା ଲାଗୁ କରିଥିଲେ । ଏହା ଦରିଦ୍ରବର୍ଗପାଇଁ ଲାଗୁ ହୋଇଥିଲା । ଇଂଲଣ୍ଡରେ (U.K.) ରେ ୧୯୯୮ରେ ଗୋଟିଏ ପୂର୍ଣ୍ଣ ଓ ବିଧିବଦ୍ଧ ଆଇନ୍ (Social Security Act-1998) ପ୍ରଣୟନ ହେଲା । ଯୁକ୍ତରାଷ୍ଟ୍ର ଆମେରିକାରେ ୧୯୩୫ରେ ଏକ ଆଇନ କରାଯାଇ ବାର୍ଦ୍ଧକ୍ୟକାଳୀନ ସହାୟତାର ବ୍ୟବସ୍ଥା କରାଗଲା । ଭାରତରେ ଅନେକ ସ୍କିମ୍ ପ୍ରବର୍ତ୍ତନ କରାଯାଇଅଛି । ଏକଥା ସମସ୍ତେ ସ୍ମରଣ ରଖିବା ଦରକାର ଯେ ଭାରତରେ ପ୍ରଥମେ ବାର୍ଦ୍ଧକ୍ୟ ଭତ୍ତା ମାସିକ ୪୦ଟଙ୍କା ହାରରେ ଓଡ଼ିଶାରେ ଶ୍ରୀମତୀ ନନ୍ଦିନୀ ଶତପଥି ମୁଖ୍ୟମନ୍ତ୍ରୀ ଥିବାବେଳେ ଲାଗୁ କରିଥିଲେ ଓ ପରେ ଭାରତବର୍ଷରେ ଏହା ଲାଗୁ ହୋଇଥିଲା । ଏହା ବୃଦ୍ଧିପାଇ ୧୦୦ଟଙ୍କା ହେଲା । ପରେ ୨୦୦ ଟଙ୍କା ଓ ବର୍ଦ୍ଧିତ ହୋଇ ଟ୩୦୦.୦୦ (୨୦୧୫ ଡିସେମ୍ବର ସୁଦ୍ଧା) କରାଯାଇଛି । ପରେ ୨୦୦୮ ମସିହାରେ ଭାରତ ସରକାର ସମସ୍ତ ଅସଂଗଠିତ ଶ୍ରମିକମାନଙ୍କ ପାଇଁ ଗୋଟିଏ ସାମାଜିକ ନିରାପତ୍ତା ଆଇନ୍ ଲାଗୁକଲେ ଯେଉଁଥିରେ ଅସଂଗଠିତ ଶ୍ରମିକଙ୍କ ପାଇଁ ଇନ୍ଦିରାଗାନ୍ଧି ଜାତୀୟ ବାର୍ଦ୍ଧକ୍ୟ ଭତ୍ତା କାର୍ଯ୍ୟକ୍ରମକୁ ବିଦ୍ଧିବଦ୍ଧ ସ୍ୱୀକୃତି ଦିଆଗଲା । ପରବର୍ତ୍ତୀ ଅବସ୍ଥାରେ ୨୦୧୪ରେ କେନ୍ଦ୍ରରେ ନୂଆ ସରକାର ଆସିବା ପରେ ଗୋଟିଏ ନୂଆ ପେନ୍‌ସନ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏହି ପେନ୍‌ସନ୍ ଯୋଜନାରେ ନାମ ହେଉଛି ଅଟଳ ପେନ୍‌ସନ ଯୋଜନା । ବର୍ଷକୁ ୨୨୬ଟଙ୍କା ରଖିଲେ ୧୮ବର୍ଷଠାରୁ ପ୍ରତ୍ୟେକ ବ୍ୟକ୍ତି ଏହି ଯୋଜନାରେ ଅନ୍ତର୍ଭୁକ୍ତ ହୋଇପାରିବେ ଏବଂ ୬୦ବର୍ଷ ପରେ ମାସକୁ ପାଞ୍ଚହଜାର ଟଙ୍କା ପେନ୍‌ସନ୍ ମିଳିବାର ବ୍ୟବସ୍ଥା ଏଥିରେ ଅଛି । ସେହିପରି ଆଉ ଗୋଟିଏ ଜାତୀୟ ପେନ୍‌ସନ୍ ଯୋଜନା ଉପଭୋକ୍ତାଙ୍କ ଭାଗୀଦାରିରେ ହେବାର ବ୍ୟବସ୍ଥା କରାଯାଇଛି । ସଂଗଠିତ ଶ୍ରମିକ ଶ୍ରେଣୀ ବା ସରକାରୀ କର୍ମଚାରୀଙ୍କ ପରି ଅସଂଗଠିତ ଶ୍ରମିକମାନଙ୍କ ପାଇଁ ପ୍ରୋଭିଡେଣ୍ଟ ପାଣ୍ଠ ବା ଗ୍ରାଚ୍ୟୁଇଟିର ବ୍ୟବସ୍ଥା ନାହିଁ । ଖାଲି ଯାହା ଏହି ପେନ୍‌ସନ୍ ବ୍ୟବସ୍ଥା । ଅବଶ୍ୟ ନିର୍ମାଣ ଶ୍ରମିକମାନଙ୍କ ପାଇଁ ୧୯୯୬ ମସିହାରେ ପ୍ରଣୀତ ଆଇନରେ କିଛି ଅଧିକ ନିରାପତ୍ତା ବ୍ୟବସ୍ଥା ରହିଛି ।

ପ୍ରଥମେ ବାର୍ଦ୍ଧକ୍ୟଭତ୍ତା ସ୍କିମ୍‌ରେ ରାଜ୍ୟ ଓ କେନ୍ଦ୍ର ମଧ୍ୟରେ ୨୫:୭୫ ଅଂଶ ଥାଇ ପେନ୍‌ସନ୍ ଦିଆଯାଉଥିଲା । ଏହି ଜାତୀୟ ବାର୍ଦ୍ଧକ୍ୟଭତ୍ତା କାର୍ଯ୍ୟକ୍ରମ (National Old Age Pension) ବୃଦ୍ଧିପାଇ ମାସିକ ୨୦୦ଟଙ୍କା ହେଲା ଓ ପରବର୍ତ୍ତୀ ଅବସ୍ଥାରେ ୩୦୦ଟଙ୍କା ହେଲା । ପେନ୍‌ସନ୍ ନେବାର ବୟସସୀମା ୬୫ରୁ ୬୦ ରୁ କମି ଆସିଲା ଓ ୮୦ ବର୍ଷପରେ ଭତ୍ତାର ପରିମାଣ ୫୦୦ ଟଙ୍କା ରଖାଗଲା ।

କେନ୍ଦ୍ରପରି ରାଜ୍ୟମାନଙ୍କରେ ମଧ୍ୟ ଗୋଟିଏ ବାର୍ଦ୍ଧକ୍ୟଭତ୍ତା ଦେବାର ବ୍ୟବସ୍ଥା ରହି ଆସିଛି । State old age pension (SOAP) ଓଡ଼ିଶାରେ ଆରମ୍ଭ ହେଲା । ପରବର୍ତ୍ତୀ କାଳରେ ଏହାର ନାମ ବଦଳାଯାଇ 'ମଧୁସୂଦନ ପେନ୍‌ସନ୍' ଯୋଜନା ବୋଲି କୁହାଗଲା । ଏଥିରେ ମଧ୍ୟ ସେହି ଧାରାରେ ପେନ୍‌ସନ୍ ଦିଆଗଲା । ବିଭିନ୍ନ ରାଜ୍ୟରେ (ଅଗଷ୍ଟ ୧୫-୨୦୧୫ସୁଦ୍ଧା)ରେ ନିମ୍ନମତେ ମାସିକ ପେନ୍‌ସନ୍ ଦିଆଯାଇଥାଏ ।

ପଶ୍ଚିମବଙ୍ଗରେ - ବିଧବା, ବିକଳାଙ୍ଗ ଓ ବାର୍ଦ୍ଧକ୍ୟ ଭତ୍ତା ମାସିକ ୧୦୦୦ଟଙ୍କା, ଗୋଆରେ ୨ହଜାର ଟଙ୍କା, ମିଜୋରାମରେ ମାସିକ ୨ହଜାର ଟଙ୍କା, ହରିଆନାରେ ଟ୧୨୦୦, ଦିଲ୍ଲୀରେ ୧୫୦୦ଟଙ୍କା, ଜମ୍ମୁ-କାଶ୍ମୀରରେ ୧୫୦୦ଟଙ୍କା, ଉତ୍ତରାଞ୍ଚଳରେ ମାସକୁ ୮୦୦ଟଙ୍କା, ମହାରାଷ୍ଟ୍ରରେ ୬୦୦ଟଙ୍କା, ରାଜସ୍ଥାନରେ ୬୦ବର୍ଷରୁ ଉର୍ଦ୍ଧ୍ୱ ବୟସ୍କ, ବୟସ୍କାଙ୍କ ପାଇଁ ୫୦୦ଟଙ୍କା, ୬୫ବର୍ଷରୁ ଉର୍ଦ୍ଧ୍ୱପାଇଁ ଟ୭୫୦.୦୦ ଓ ୭୫ ବର୍ଷ ଉପରକୁ ୧୦୦୦ଟଙ୍କା, ତ୍ରିପୁରାରେ ୫୦୦ଟଙ୍କା, ଗୁଜୁରାଟରେ ୪୦୦ଟଙ୍କା, ଝାଡ଼ଖଣ୍ଡରେ ୪୦୦ଟଙ୍କା ବାର୍ଦ୍ଧକ୍ୟ ଭତ୍ତା ଦିଆଯିବାର ବ୍ୟବସ୍ଥା ରହିଛି ।

ରାଷ୍ଟ୍ରଗଠନ ପ୍ରକ୍ରିୟାରେ ଅସଂଗଠିତ ଶ୍ରମିକ ଶ୍ରେଣୀର, ଚଷୀ ମୁଲିଆଙ୍କର ଏପରିକି ଘରେ ଖଟୁଥିବା ସ୍ତ୍ରୀ ଲୋକଙ୍କର ଅନେକ ଅବଦାନ ଅଛି । କିନ୍ତୁ କାହିଁକି କେଜାଣି ଜନମଙ୍ଗଳର ଦ୍ୱାହି ଦେଉଥିବା ରାଷ୍ଟ୍ର ଏମାନଙ୍କୁ ଗୋଟିଏ ଅସମ୍ମାନ ଜନକ ଭତ୍ତା ପ୍ରଦାନ କରିଥାଏ । ବୟସାଧିକ ଲୋକଙ୍କର (ବରିଷ୍ଠ ନାଗରୀକ)ନିର୍ଦ୍ଧାରଣ ଭାରତରେ ହାରହାରି ୬୮.୧୩ବର୍ଷ ଥିବାବେଳେ, ଜାପାନରେ ୮୪.୭୪ ବର୍ଷ, ସିଂଗାପୁରରେ ୮୪.୫୧ବର୍ଷ ଥିବାର ଲକ୍ଷ୍ୟ କରାଯାଇଛି । ଏ ଦୃଷ୍ଟିରୁ ସାରା ବିଶ୍ୱରେ ଭାରତ ୧୬୭ ତମ ସ୍ଥାନରେ ଅଛି । ହେଲେ ଶ୍ରମିକଭାବେ ଖଟୁଥିବା ଭାରତୀୟ ବୟସ୍କଙ୍କ ସଂଖ୍ୟା ସବୁଠାରୁ ଅଧିକ ୫୫% ରେ ଥିବାବେଳେ ଯୁକ୍ତରାଷ୍ଟ୍ର ଆମେରିକାରେ

୩୫%, ଫ୍ରାନ୍‌ସରେ ସବୁଠାରୁ କମ୍ ୫% (ପୁରୁଷ) ଓ ଇଟାଲିରେ ୪%(ମହିଳା) ଥିବାର ଦେଖାଯାଇଥାଏ । ଦାରିଦ୍ର୍ୟ ଭିତରେ ରହୁଥିବା ବୟସ୍କଙ୍କ ସଂଖ୍ୟା ଭାରତରେ ୨୧.୮% ଥିବାବେଳେ ଯୁକ୍ତରାଷ୍ଟ୍ର ଆମେରିକାରେ ୨୨.୪%, ଯାପାନରେ ୨୨.୦%, କୋରିଆରେ ୩୬.୨%, ଚିନ୍‌ରେ ୨୫.୦%, ଇଂଲଣ୍ଡରେ ୧୫.୪%ର ରହିଥିବାର ଆକଳନ କରାଯାଇଛି । ଭାରତରେ ୬୦ବର୍ଷ ଉପରକୁ ବଞ୍ଚୁଥିବା ଲୋକଙ୍କ ସଂଖ୍ୟା କମ୍ ଥିବାର ଦାରିଦ୍ର୍ୟ ସଂଖ୍ୟା ହାର ଅନ୍ୟ ଦେଶ ଯଥା ଜାପାନ, ଚିନ୍ ଆମେରିକା ଠାରୁ କମ୍ ସେହି ସବୁ ରାଜ୍ୟରେ ବରିଷ୍ଠ ନାଗରିକ ସଂଖ୍ୟା ବହୁତ ଅଧିକ ଥିବାରୁ ଭାରତର ଏପରି ତୁଳନାତ୍ମକ ଚିତ୍ର ମିଳିଥାଏ । ସ୍ଥିତି ବସ୍ତୁତଃ ଅତ୍ୟନ୍ତ ଦୟନୀୟ ରହିଛି । ଭାରତରେ ପାଖାପାଖି ୮୩% ବୟସ୍କ ଲୋକେ ପରିବାରରେ ଅନ୍ୟମାନଙ୍କ ଉପରେ ନିର୍ଭର କରି ରହିଥାନ୍ତି । ଚିନ୍‌ରେ ଏହା ୬୪% । ସବୁଠାରୁ କମ୍ ବରିଷ୍ଠ ନାଗରିକ ସ୍ୱିଡେନରେ ପରିବାର ସହିତ ରହିଥାନ୍ତି । ଏହିହାର ହେଉଛି ୪.୧% । ମୋଟ ଉପରେ ଭାରତର ସ୍ଥିତି ହେଉଛି ସମଗ୍ର ବିଶ୍ୱରେ ବରିଷ୍ଠ ନାଗରିକ ମାନଙ୍କ ପାଇଁ ଅତ୍ୟନ୍ତ ଦୟନୀୟ ଓ ଖରାପ ।

ସାମାଜିକ - ଅର୍ଥନୈତିକ ଓ ଜାତିଗତ ଗଣନା ୨୦୧୧ରେ ପ୍ରଦତ୍ତ ତଥ୍ୟ ଅନୁସାରେ ଭାରତରେ ଅସଂଗଠିତ ଶ୍ରମିକଙ୍କ ସଂଖ୍ୟା ଖୁବ୍ ଅଧିକ । ପ୍ରଦତ୍ତ ତଥ୍ୟ ଅନୁସାରେ ଦେଶରେ ଥିବା ଗ୍ରାମୀଣ ପରିବାରର ମାତ୍ର ୧୦% ପରିବାର ମାସିକ ହାରରେ ଦରମା ପାନ୍ତି ଓ ଦେଶରେ ମୋଟ ୨୪କୋଟି ୩୯ଲକ୍ଷ ପରିବାର ମଧ୍ୟରୁ ଗ୍ରାମାଞ୍ଚଳରେ ୧୭କୋଟି ୯୧ଲକ୍ଷ ପରିବାର ଗ୍ରାମାଞ୍ଚଳରେ ରୁହନ୍ତି । ମାସିକ ହାରରେ ଦରମା ପାଉଥିବା ପରିବାର ମଧ୍ୟରେ ସରକାରୀ ଚାକିରୀରେ ୫%, ସରକାରୀ ଉଦ୍ୟୋଗରେ ୧.୧୧%, ଘରୋଇ ଉଦ୍ୟୋଗରେ ୩.୬୭% । ଲୋକ କାର୍ଯ୍ୟ କରୁଥିବାବେଳେ ମଜୁରିଆଙ୍କ ସଂଖ୍ୟା ୫୧.୧୪% ଚାଷ କାର୍ଯ୍ୟରେ ୩୦.୩୧% ଓ ଅନ୍ୟାନ୍ୟ କାର୍ଯ୍ୟରେ ୧୪.୬୧% କାର୍ଯ୍ୟ କରୁଛନ୍ତି ।

ଭାରତର ସ୍ଥିତି ଅନୁସାରେ ଓଡ଼ିଶାରେ ବରିଷ୍ଠ ନାଗରିକଙ୍କ ସ୍ଥିତି ଆହୁରି ଅଧିକ ଦୟନୀୟ । ଏକତରଫରେ ରାଜ୍ୟରେ ପରିବାରର ଦାରିଦ୍ର୍ୟସ୍ଥିତି ଅନ୍ୟ ରାଜ୍ୟମାନଙ୍କ ଭିତରେ ଅଧିକ ଥିବାବେଳେ ମୁଲିଆ, ମଜୁରିଆ, କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ, ଦାଦନଶ୍ରମିକଙ୍କ ସଂଖ୍ୟା ଏ ରାଜ୍ୟରେ ଖୁବ୍ ଅଧିକ । ରାଜ୍ୟରେ ସଂଗଠିତ ଶ୍ରମିକ ଅର୍ଥାତ୍ ସରକାରୀ କର୍ମଚାରୀ, ଅର୍ଦ୍ଧ ସରକାରୀ ସଂସ୍ଥାରେ କାର୍ଯ୍ୟରତ କର୍ମଚାରୀ

ଓ ଅନ୍ୟାନ୍ୟ ଘରୋଇ ସଂସ୍ଥାରେ କାର୍ଯ୍ୟ କରୁଥିବା ଲୋକଙ୍କ ସଂଖ୍ୟା ମୋଟ ଉପରେ ୨.୮% ଥିବା କଥା ସାମାଜିକ, ଅର୍ଥନୈତିକ ଓ ଜାତିଗତ ଗଣନା ୨୦୧୧ରେ କୁହାଯାଇଛି । ଅର୍ଥାତ୍ ୫,୮୬, ୪୭୫ଟି ପରିବାର ଏପରି ଆୟରେ ବଞ୍ଚନ୍ତି । ସେଥିମଧ୍ୟରୁ ସରକାରୀ ଚାକିରୀରେ ୪.୪%, ସରକାରୀ ଉଦ୍ୟୋଗରେ ୦.୫% ଘରୋଇ ସଂସ୍ଥାରେ ୧.୯% କାର୍ଯ୍ୟ କରୁଛନ୍ତି । ମଜୁରିଆଙ୍କ ସଂଖ୍ୟା ୫୯% ଚାଷୀ ସଂଖ୍ୟା ୨୩% । ଅତଏବ ବାର୍ଦ୍ଧକ୍ୟ କାଳୀନ ନିରାପତ୍ତା, ଆବଶ୍ୟକ କରୁଥିବା ଲୋକସଂଖ୍ୟା ମୋଟ ଲୋକସଂଖ୍ୟାର ୮୨% । ଅନ୍ୟ ଏକ ହିସାବରେ କୁହାଯାଇଛି ରାଜ୍ୟରେ ୮୮% ପରିବାରଙ୍କର ମାସିକ ଆୟ ୫ ହଜାର ଟଙ୍କାରୁ କମ୍ । ଏହି ଅଳ୍ପ ଆୟରେ ଚଳୁଥିବା ପରିବାର ବୁଢ଼ାବୁଢ଼ୀଙ୍କୁ ଚଳାଇବାରେ ସକ୍ଷମ ତ ?

ସମସ୍ତ ବିଷୟ ବିଚାରକୁ ନେଇ ଅସଂଗଠିତ ଶ୍ରମିକ ଶ୍ରେଣୀକୁ ନ୍ୟାୟ ପ୍ରଦାନ କରିବା ଜନମଙ୍ଗଳ ରାଷ୍ଟ୍ରର ପରମ ଓ ପ୍ରଥମ କର୍ତ୍ତବ୍ୟ । ପ୍ରତ୍ୟେକ ପରିବାରର ବର୍ଷୀୟାନ୍ ପୁରୁଷ ବା ସ୍ତ୍ରୀ, ଯେଉଁମାନେ ୬୦ବର୍ଷରୁ ଉର୍ଦ୍ଧ୍ୱ, ସେମାନଙ୍କ ପାଇଁ ଅନ୍ତତଃପକ୍ଷେ କୁଶଳୀ କାରୀଗର ପାଇଁ ନିର୍ଦ୍ଧାରିତ ମଜୁରୀର ଅର୍ଦ୍ଧେକ ହିସାବରେ ମାସିକ ଭତ୍ତା ପ୍ରଦାନ କଲେ ଆର୍ଥିକ ସ୍ୱଚ୍ଛଳତା ସାଙ୍ଗକୁ ପରିବାରରେ ଉପୁଜୁଥିବା ବିଶୃଙ୍ଖଳା ବହୁ ଅଂଶରେ ସମାପ୍ତି ଘଟିବ ।



# ଅସଂଗଠିତ ଶ୍ରମିକ ଓ ମୂଲିଆ ବଜାର

ବଜାର ଅର୍ଥନୀତିକୁ ନେଇ ଦେଶ ତମାମ ହୁରି ପଡ଼ିଛି । "ବଜାର ପ୍ରତିଯୋଗିତା" ଭିତରେ ଖାଉଟି ଲାଭବାନ ହେଉଛି ବୋଲି ଯୁକ୍ତିଟିଏ ଆସୁଛି । ଭଲ ଜିନିଷ ବଜାରରେ ଭରପୂର ଥିଲେ ଖାଉଟୀ ସେଥିପାଇଁ ଉଚ୍ଚଦର ଦେବାକୁ କୁଣ୍ଠା କରେନାହିଁ । ଅବଶ୍ୟ କ୍ରୟଶକ୍ତି ଥିବା ବର୍ଗପାଇଁ ଏହା ପ୍ରଯୁଜ୍ୟ । ଯେଉଁ ପଦାର୍ଥ ସମୟର ଆବଶ୍ୟକତା ପୂରଣ କରିବାରେ ଅସମର୍ଥ ସେ ସବୁର ଦର ଚାହିଦା ଅନୁସାରେ ବୃଦ୍ଧି ଘଟିଥାଏ । ଏହା ବଜାରରେ ଯୋଗାଣ ଓ ଆବଶ୍ୟକତା ଉପରେ ନିର୍ଭରଶୀଳ । ଅତ୍ୟାବଶ୍ୟକ ଜିନିଷ ପାଇଁ ଖାଉଟିର ସାମର୍ଥ୍ୟ ନଥିଲେ ଜନମଙ୍ଗଳକାରୀ ରାଷ୍ଟ୍ର ସେ ସବୁ ଜିନିଷ ଉପରେ ରିହାତି ଘୋଷଣା କରିଥାନ୍ତି । ଅଥଚ ମୂଲ୍ୟବାନ ମାନବସମ୍ବଳକୁ ବିନିଯୋଗ କଲାବେଳେ ବ୍ୟବହାରକାରୀର କ୍ରୟ କ୍ଷମତା ଥିଲେ ମଧ୍ୟ ଯୋଗାଣ ଅଧିକ ହେତୁ ଏକତରଫା ଭାବେ ଶସ୍ତାରେ ଶ୍ରମ କିଣା ଯାଉଛି । ସେଥିପାଇଁ ବଡ଼ ବଡ଼ ବେପାରୀ ସଂସ୍ଥାରେ ମିଳୁଥିବା ଶ୍ରମ କ୍ରୟ ପାଇଁ ଶ୍ରମ ବଜାର ଖୋଜି ଖୋଜି କାରଖାନା ବସାଉଛନ୍ତି । ଶସ୍ତା ଶ୍ରମ ଦେଖାଇ ଦେଶର ପ୍ରଧାନମନ୍ତ୍ରୀ ବୁଲି ବୁଲି ପୁଂଜି ନିବେଶକାରୀ ଶିଳ୍ପପତିଙ୍କୁ ନିମନ୍ତ୍ରଣ କରୁଛନ୍ତି । 'ମେକ୍ ଇନ୍ ଇଣ୍ଡିଆ'ର ସ୍ୱପ୍ନ ବାଣ୍ଟିଥାନ୍ତି ।

ଏହାର ମୁଖ୍ୟ କାରଣ ହେଉଛି ଶସ୍ତାରେ ଶ୍ରମିକ ଭାରତ ବଜାରରେ ମିଳୁଛନ୍ତି, ଅଧିକ ଶସ୍ତା ଓଡ଼ିଶାର ଶ୍ରମିକ । ଇଏ ନ ହେଲେ ସିଏ କାମକୁ ଆସିବେ ଏହି ମନୋଭାବଟିଏ ଅଛି । ଯେଉଁଠି ଏକ ସମୟରେ ଅନେକ ମିଳିଥାନ୍ତି ମଜୁରିର ମୂଲ୍ୟହ୍ରାସ ହେବା ସ୍ୱାଭାବିକ । ଠିକାଦାର, ଦଲାଲଙ୍କ ଜରିଆରେ ମୂଲିଆ ଯୋଗାଡ଼ କରାଯାଏ । ଏହି ମୂଲିଆ ମଜୁରିଆ । ମୂଲିଆ ବଜାରର ଏହା ହେଉଛି ପାଇକାରୀ ସୂତ୍ର । ଖୁଚୁରା ମୂଲିଆ ବଜାର ସହରାଞ୍ଚଳରେ ଦେଖିବାକୁ ମିଳିଥାଏ । ଗୋଟିଏ ଗୋଟିଏ ଜାଗାରେ ମୂଲିଆଙ୍କ ଦୈନିକ ହାଟ ବସେ । ଲୋକେ ଆସି ମନମୁତାବକ ନେଇଥାନ୍ତି । ଦର କଷାକଷି ଚାଲେ । ଏହା ସଂପୂର୍ଣ୍ଣଭାବେ ଅସ୍ଥାୟୀ ।

ଅନ୍ୟପକ୍ଷରେ ଗ୍ରାମାଞ୍ଚଳରେ ଶ୍ରମ ଓ ଶ୍ରମଜୀବୀ ବିପର୍ଯ୍ୟୟର ସମ୍ମୁଖୀନ । ହୁଏତ ବର୍ଷ ତମାମ ଶ୍ରମ କରିବାର ସୁଯୋଗ ନାହିଁ ଅବା ମିଳୁଥିବା ଶ୍ରମର ମଜୁରି ଠିକ୍ ସମୟରେ ମିଳୁନାହିଁ କିମ୍ବା ଶ୍ରମ ନିୟମିତ ଭାବରେ ମିଳୁନାହିଁ । ଗୋଟିଏ ତଥ୍ୟ ଆଧାରରେ ଏହା ପରଖିବାର ଅଛି । ମହାତ୍ମାଗାନ୍ଧି ନିଶ୍ଚିତ କର୍ମନିଯୁକ୍ତି ଯୋଜନା

(ମନେରଗା)ରେ ବର୍ଷକରେ ୧୦୦ ଦିନର କାମ ଯୋଗାଇ ଦେବାର ବ୍ୟବସ୍ଥା ଥିଲେ ମଧ୍ୟ ଓଡ଼ିଶାର ଗ୍ରାମାଞ୍ଚଳରେ ୨୦୧୨ - ୧୩ ଆର୍ଥିକ ବର୍ଷରେ ରାଜ୍ୟରେ ହାରାହାରୀ ୩୪ଦିନ କାର୍ଯ୍ୟ ଯୋଗାଇ ଦିଆଯାଇଥିଲା । ସେହି ଅବସ୍ଥାର ଉନ୍ନତି ପରବର୍ତ୍ତୀ ବର୍ଷ ମାନଙ୍କରେ ଘଟିନାହିଁ । ପରବର୍ଷ ୨୦୧୩-୧୪ରେ ନିଯୁକ୍ତି ଦିବସ ୪୨ଦିନ ଓ ୨୦୧୪-୧୫ରେ ୩୬ ଦିନ ଥିଲା । ପରବର୍ତ୍ତୀ ବର୍ଷ (୨୦୧୫-୧୬) ପ୍ରଥମ ୬ ମାସରେ ମଜୁରିଆ ପରିବାର ହାରାହାରି ୧୫ଦିନ କାମ ପାଇଛନ୍ତି ଏବଂ ଏହି ପରିବାରର ସଂଖ୍ୟା ୪ଲକ୍ଷ ୧୪ ହଜାର ଥିବାର ଜଣାଯାଏ । ରାଜ୍ୟରେ ହାରାହାରି ୬୫.୯ ଲକ୍ଷ ପରିବାର ମନେରଗା କାମପାଇଁ ପଞ୍ଜିକୃତ ହୋଇଥିବା ବେଳେ ୨୦୧୨-୧୩ରେ ୭୫,୦୩୮ପରିବାର, ୨୦୧୩-୧୪ରେ ୮୧.୫୭ଲକ୍ଷ ପରିବାର, ୨୦୧୪-୧୫ରେ ୮୧,୯୪୯ ପରିବାରକୁ ୧୦୦ ଦିନର କାମ ମିଳିଛି । କାମ ଯୋଗ ଯାଇଥିବା ପରିବାର ସଂଖ୍ୟା ୨୦୧୨-୧୩ରେ ୧୫.୯୯ଲକ୍ଷ, ୨୦୧୩-୧୪ରେ ୧୭.୧ଲକ୍ଷ ଓ ୨୦୧୪-୧୫ରେ ୧୪.୬୮ ଲକ୍ଷ ଥିଲା । ଅତଏବ ପଞ୍ଜିକୃତ ପରିବାର ମଧ୍ୟରୁ କାର୍ଯ୍ୟ କରୁଥିବା ଶ୍ରମିକ ପରିବାର ସଂଖ୍ୟା ୧/୩ ଅଂଶରୁ କମ୍, ବର୍ଷକରେ ମାତ୍ର କିଛିଦିନର କାମ କରିବାର ସୁଯୋଗ ପାଇଛନ୍ତି ।

ଏକ ସମୟରେ 'ମନେରଗା' କାର୍ଯ୍ୟରେ ଥିବା ଶ୍ରମଦିବସ ଅତ୍ୟନ୍ତ ଦୟନୀୟ ଥିବାବେଳେ ରାଜ୍ୟରେ ପଂଜିକୃତ ନିର୍ମାଣ ଶ୍ରମିକଙ୍କ ସଂଖ୍ୟା ମାତ୍ର ୯ଲକ୍ଷ ୧୮ ହଜାର ଥିବା କୁହାଯାଉଛି । ଏହି ନିର୍ମାଣ ଶ୍ରମିକମାନଙ୍କ ମଧ୍ୟରେ କୁଶଳୀ, ଅର୍ଦ୍ଧକୁଶଳୀ ଏବଂ ଅଣକୁଶଳୀ ଶ୍ରମିକ ଅଛନ୍ତି । ଏମାନେ ମଧ୍ୟ ବର୍ଷ ତମାମ ବା ବର୍ଷକରେ ୨୦୦ ଦିନରୁ ଅଧିକ  କାର୍ଯ୍ୟ ପାଇ ନଥାନ୍ତି ।

ସାମାଜିକ ଅର୍ଥନୈତିକ ଓ ଜାତିଭିତ୍ତିକ ସର୍ବେକ୍ଷଣ ଅନୁସାରେ ରାଜ୍ୟରେ ଗ୍ରାମାଞ୍ଚଳରେ ଥିବା ୮୬ଲକ୍ଷ ପରିବାର ମଧ୍ୟରୁ ୫୮% ଅର୍ଥାତ୍ ପାଖାପାଖି ୫୦ଲକ୍ଷ ପରିବାର ଶ୍ରମିକ ବର୍ଗର ଓ ୨୩%, ଅର୍ଥାତ୍ ପାଖାପାଖି ୧୨ଲକ୍ଷ ପରିବାର ଚାଷୀ ପରିବାରର ଅଛନ୍ତି । ଏହି ଚାଷୀମାନଙ୍କ ମଧ୍ୟରେ କ୍ଷୁଦ୍ର ଓ ନାମମାତ୍ରଚାଷୀ ଅନେକ ସମୟରେ ମୂଲ ଲାଗିଥାନ୍ତି । ବଡ଼ଚାଷୀମାନେ ବର୍ଷ ତମାମ ଯେ କାମ କରିଥାନ୍ତି ସେପରି ନୁହେଁ । ଏସବୁକୁ ଏକାଠି କରି ହିସାବକଲେ ରାଜ୍ୟରେ ପାଖାପାଖି ୮୫% ଅସଂଗଠିତ ଶ୍ରମିକ ଅଛନ୍ତି । ଅନ୍ୟଏକ ଆକଳନରୁ ମିଳିଥିବା ଚିତ୍ର ଅନୁସାରେ ରାଜ୍ୟରେ ମୋଟ ୯୩.୨% ଲୋକ (୧୦୦-୬.୮) ଦିନ ମଜୁରୀଆ ବା ଅସଂଗଠିତ ଶ୍ରମିକ ଶ୍ରେଣୀର ।

ଏହି ଦିନ ମଜୁରିଆଙ୍କ ମଧ୍ୟରେ ଅନେକ ଅଣକୁଶଳୀ ମଜୁରିଆ । କାରଣ ସମାଜରେ ବୃତ୍ତିଗତ ଧନ୍ଦା ପ୍ରଚଳିତ ଥିବା ପର୍ଯ୍ୟନ୍ତ ତନ୍ତି ପୁଅ ତନ୍ତ ଚଳାଇବାରେ କୁଶଳୀ, କୁମ୍ଭାର ପରିବାରର ପିଲାଏ ହାଣ୍ଡି ମାଠିଆ ଗଢ଼ିବାର କୁଶଳୀକାମ କରିବାରେ, କମାର ପୁଅ, ଚମାର ପୁଅ ସମସ୍ତେ ବଂଶ ପରମ୍ପରାନୁକ୍ରମେ ବୃତ୍ତିଗତ କୌଶଳ ଶିଖିଥିଲେ ଓ ସେମାନଙ୍କୁ ଅନେକ ସମୟରେ ଖୋଜା ପଡୁଥିଲା । ଏବେ କିନ୍ତୁ ସମାଜରେ ପାରିବାରିକ ବୃତ୍ତି ଭୁଷୁଡ଼ି ଯାଇଛି । ଏଣୁ 'କୁଶଳୀ' କାରିଗର ବଂଶ ପ୍ରାୟତଃ ଲୋପ ପାଇବାରେ ଲାଗିଛି ।

ଏହି ଅସଂଗଠିତ ଶ୍ରମିକ ଶ୍ରେଣୀ ଅନ୍ୟ ରାଜ୍ୟକୁ କାମ ଅନ୍ୱେଷଣରେ ଯାଉଛନ୍ତି (Migrated labour) ଓ ଦାଦନ (Bonded labour) ଖଟୁଛନ୍ତି । ଏ ସବୁ ଦେଖିବା ପରେ ମଧ୍ୟ ସରକାରୀ ଯୋଜନା ସଜଡ଼ା ଯାଉନାହିଁ । କେବଳ ସରକାରୀ ଘୋଷଣା ପ୍ରକାଶ ପାଉଛି । ଯେପରି ମରୁଡ଼ି ଅଞ୍ଚଳରେ ମହାତ୍ମାଗାନ୍ଧି ଜାତୀୟ ଗ୍ରାମୀଣ ରୋଜଗାର ଯୋଜନାରେ କେନ୍ଦ୍ର ସରକାର ବର୍ଷକୁ ସର୍ବନିମ୍ନ ୧୫୦ଦିନ ମଜୁରୀ ଦିବସ ଘୋଷଣା କରିବା ପରେ ରାଜ୍ୟ ସରକାର ଘୋଷଣା ପ୍ରତିଦ୍ୱନ୍ଦ୍ୱିତାରେ ଆଉ ପାଦେ ଆଗେଇ ଗଲେ । ରାଜ୍ୟ ସରକାର ୧୫୦ ଦିନକୁ ବଢ଼ାଇ ୨୦୦ ଦିନ କରିଦେଲେ । ପୂର୍ବବର୍ଣ୍ଣିତ ସ୍ଥିତିକୁ ଦେଖିଲେ ଯେଉଁଠି ସବୁ ଶ୍ରମିକ ପରିବାରକୁ ୧୦୦ ଦିନର କାମ ଦିଆଯାଇ ପାରୁନାହିଁ ସେଠି ୨୦୦ ଦିନ କିପରି ଯୋଗାଇ ଦିଆଯିବ ତାହାହିଁ ଚିନ୍ତାର କାରଣ ।

ଅସଂଗଠିତ ଶ୍ରମିକ ଶ୍ରେଣୀ ଗାଁ ଗହଳରେ ଯେଉଁ ଅଳ୍ପକିଛି କାମ ପା'ନ୍ତି ସେଥିପାଇଁ ମଜୁରୀରେ କୁଣ୍ଠା ପ୍ରକାଶ ପାଇଥାଏ । ଗାଁରେ ଯେଉଁମାନେ ମୂଲିଆ ଖୋଜିଥାନ୍ତି ସେମାନେ ମୁଖ୍ୟତଃ ଚାଷକାମ ପାଇଁ ରୁଆରୋଇ, ବଛାବଛି ବା ଧାନକଟା ସମୟରେ ଖୋଜିଥାନ୍ତି । ନିଯୁକ୍ତିକାରିର ଚାଷରୁ ଅନେକ ସମୟରେ ମୂଳ ଖର୍ଚ୍ଚ ଉଠିନଥାଏ । ସେପରି ସ୍ଥଳରେ ସେ ଧାର୍ଯ୍ୟ ମଜୁରୀ ଦାବିକୁ କୁଣ୍ଠା ପ୍ରକାଶ କରିଥାଏ । ଦେବାର କ୍ଷମତା(Paying Capacity) ପ୍ରଶ୍ନ ଉଠିଥାଏ । ଜାଣିବା କଥା ଯେ ଗାଁରେ ୮୮% ପରିବାରର ମାସିକ ୫ ହଜାର ଟଙ୍କା ଆୟ ନଥାଏ । ଏଣୁ ଏପରି କୁଣ୍ଠା ପ୍ରକାଶ କରିବା ସ୍ୱାଭାବିକ । ମୁଲିଆମାନେ କାମ କରୁ ନଥିବାର ଯେଉଁ ଅଭିଯୋଗମାନ ଶୁଣାଯାଏ ଅନେକ ଭାବରେ ତାହା ସତ୍ୟ କାରଣ ବର୍ଷକରେ ଗୋଟିଏ ଫସଲ ମାତ୍ର ୪/୫ମାସର କାମ ଯୋଗାଇଥାଏ ଏବଂ ୭/୮ମାସ ପାଇଁ ଗାଁରେ କର୍ମ ଦିବସର ଯୋଜନା ଆଦୌ

ନାହିଁ । କିଛି କାଁ ଭାଁ କାମ ପା'ନ୍ତି ବା ବଣ ଜଙ୍ଗଲରୁ କାଠ, ପତ୍ର (ଶାଳ, କେନ୍ଦୁପତ୍ର) ସଂଗ୍ରହ କରନ୍ତି । ଅନ୍ୟ ସମୟରେ ପ୍ରାୟତଃ ବିନା କାମରେ ବସି ରହନ୍ତି ।

ଯେଉଁଥିପାଇଁ କର୍ମଜୀବୀମାନେ ବହୁସଂଖ୍ୟାରେ ଗାଁ ଛାଡୁଛନ୍ତି । ସହରମାନଙ୍କରେ ମୂଲିଆ ବଜାର ସୃଷ୍ଟି ହେଉଛି ବା ଦାଦନ ଖଟିବାକୁ, ଇଟାଭାଟିରେ କାମ କରିବାକୁ ଗ୍ରାମରୁ ଅନ୍ତର ହୋଇଥାନ୍ତି ।

ଏହି ଅସଂଗଠିତ ଶ୍ରମିକମାନଙ୍କ ମଧ୍ୟରେ ବସ୍ତୁତଃ ଅନେକ ଅଣକୁଶଳୀ । ଭାରତର ମୋଟ ଶ୍ରମଶକ୍ତିର ୪% ରୁ କମ୍ ହେଉଛନ୍ତି କୁଶଳୀ । ଗୋଟିଏ ତଥ୍ୟରୁ ମିଳିଥାଏ ଯେ ଭାରତରେ ମାତ୍ର ୪.୫% କୁଶଳୀ ଛାତ୍ରଛାତ୍ରୀ ଥିବାବେଳେ କୋରିଆ ପରି ରାଜ୍ୟରେ ଏହି ସଂଖ୍ୟା ୯୬% ରୁ ଅଧିକ । ସେଇଥିପାଇଁ ଗୋଟିଏ ଢୁରି ପଡ଼ିଛି ତାହା ହେଉଛି 'କୁଶଳୀ ଭାରତ'(Skill India) । ସମସ୍ତ ଶ୍ରମିକ କୁଶଳୀ ହେବେ କହି ଏହି ଢୁରି ପକାଇଥିବା ବ୍ୟକ୍ତିଗଣ ବୋଧହୁଏ ଭୁଲି ଯାଇଛନ୍ତି ଯେ ଦେଶରେ ପାଶ୍ କରିଥିବା ସମସ୍ତ ଇଂଜିନିୟରିଂ ଛାତ୍ରଛାତ୍ରୀଙ୍କ ମଧ୍ୟରୁ ଅନେକ ବିନା କର୍ମସଂସ୍ଥାନରେ ବସି ରହିଛନ୍ତି ଏବଂ ଇଂଜିନିୟରିଂ ପଢ଼ିବାକୁ ଛାତ୍ରଛାତ୍ରୀମାନେ ଆଗ୍ରହ ପ୍ରକାଶ କରୁନାହାନ୍ତି । ଯେଉଁଥିପାଇଁ ଚଳିତବର୍ଷ ଦେଶରେ ଥିବା ମୋଟ ଇଂଜିନିୟରିଂ ସିଟ୍ ମଧ୍ୟରୁ ୧୬ଲକ୍ଷ ସିଟ୍ ଖାଲି ପଡ଼ିଛି । ସେହିପରି ଅନେକ ଡିପ୍ଲୋମାଧାରୀ ଟେକନିକାଲ ଯୁବକ ଯୁବତୀ ଖାଲି ବସିଛନ୍ତି । ଆଇ.ଟି.ଆଇ ଏବଂ ପଲିଟେକ୍ନିକ୍ ପାସ୍ କରିଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରୁ ୫୦% ବେକାର । ଏସବୁ ଲକ୍ଷ୍ୟକଲେ ମଜୁରିଆଙ୍କ ପରିବର୍ତ୍ତେ ଗୋଛା ଗୋଛା କୁଶଳୀ, ଉଚ୍ଚକୁଶଳୀ, ଅର୍ଦ୍ଧକୁଶଳୀ ମଣିଷ ରୁଣ୍ଡ ହେବେ ସିନା ଅନ୍ୟକିଛି ଗୁଣାତ୍ମକ ପରିବର୍ତ୍ତନ ଘଟିବ ନାହିଁ ।

ସି.ଆଇ.ଆଇର ଇଣ୍ଡିଆ ସ୍କିଲ୍ ରିପୋର୍ଟ-୨୦୧୫ ମଧ୍ୟ ଦେଶରେ ବର୍ଷକୁ ୩୫ଲକ୍ଷ ଯୁବକଙ୍କୁ ତାଲିମ୍ ଦେବାର ବ୍ୟବସ୍ଥା ଥିବାବେଳେ ଏହାର ମାନ ମଧ୍ୟ ସେତେ ଉଚ୍ଚସ୍ତରର ନୁହେଁ ବୋଲି ପ୍ରକାଶ କରିଛି । ଅଥଚ ସେହି ସମୟରେ ଚିନ୍ ଦେଶରେ ପ୍ରତିବର୍ଷ ୯ କୋଟି ଲୋକଙ୍କୁ ଉଚ୍ଚମାନର ଦକ୍ଷତା ତାଲିମ୍ ଦେବାକୁ ହୋଇଥାଏ ।

ଦେଶରେ ପ୍ରତିବର୍ଷ ୧କୋଟି ୨୫ଲକ୍ଷ ଲୋକ ନିଯୁକ୍ତି ଆଶାରେ ଦରଖାସ୍ତ କରିଥିବାବେଳେ ସେମାନଙ୍କ ମଧ୍ୟରୁ ମାତ୍ର ୩୭% ଲୋକ ହାରାହାରି ନିଯୁକ୍ତି ପାଇଥାନ୍ତି । ଏହାକ'ଣ ଦେଶର ସର୍ବପ୍ରଧାନ ସ୍ୱପ୍ନବିକାଳିଙ୍କ ଦୃଷ୍ଟିକୁ ଆସିନାହିଁ ?

ବଜାରରେ ସବୁବର୍ଗର ଅର୍ଥାତ୍ ଅଣ କୁଶଳୀ, ଅର୍ଦ୍ଧ କୁଶଳୀ, କୁଶଳୀ ଓ ଉଚ୍ଚକୁଶଳୀ ଶ୍ରମିକର ଉପସ୍ଥିତି ଆବଶ୍ୟକ । ତା'ହେଲେ ଖାଉଟୀମାନେ ଆବଶ୍ୟକତା ମୁତାବକ ଶ୍ରମିକକୁ ମଜୁରୀ ଦେଇ ନେବେ । ଏହି ପ୍ରକାର ବଜାର ଆବଶ୍ୟକତା ଭିତ୍ତିକ ହେବା ଦରକାର । ପରିବାରଟିଏ ଚାହୁଁଥିବା ଲୋକ ଅର୍ଥାତ୍ ବୁଢ଼ାବୁଢ଼ୀଙ୍କ ପାଇଁ ଉଚ୍ଚ ଶ୍ରେଣୀରେ  ନର୍ସ, ତଳ ଶ୍ରେଣୀର ଧାଈ ପରି ସେବାକାରୀ ବା ପିଲାଙ୍କୁ ଦେଖାଚାହାଁ କରିବାକୁ ତାଲିମ୍‌ପ୍ରାପ୍ତ ପ୍ଲେ ସ୍କୁଲ ଶିକ୍ଷୟତ୍ରୀ ବା ଆୟା ସମସ୍ତେ ତାଲିମ ପ୍ରାପ୍ତ ହେବା ଦରକାର । ସେମାନଙ୍କର କାର୍ଯ୍ୟ ନିର୍ଘଣ୍ଟ ମଜୁରୀ କାର୍ଯ୍ୟଧାରା ସବୁ ନିର୍ଦ୍ଧାରିତ ହେବା ଆବଶ୍ୟକ । ଅନ୍ୟପକ୍ଷରେ ଅର୍ଥନୈତିକ ସମୃଦ୍ଧ(Growth startegy) ସହାୟତା ଦେବାଭଳି ଶ୍ରମିକମାନେ ତାଲିମ ପ୍ରାପ୍ତ ହେବା ଦରକାର । ଏହି ଅସଂଗଠିତ ଶ୍ରମିକର ବଜାରରେ ମହଜୁଦ ଥିବା ଶ୍ରମିକ ଶ୍ରେଣୀ ମୁଖ୍ୟତଃ ଶ୍ରମ ନିଯୁକ୍ତି (Wage employment), ଆତ୍ମନିଯୁକ୍ତି(Self employment) ଏବଂ ଶ୍ରମିକ ଯୋଗାଣ(labour export) ଶ୍ରେଣୀଭୁକ୍ତ । ଗୋଟିଏ ସୁସଂଗଠିତ ଶ୍ରମ ବଜାର ଏହି ତିନିବର୍ଗର ଆବଶ୍ୟକତା ଭିତ୍ତିରେ ସୃଷ୍ଟି ହେବା ଦରକାର । ତାଲିମ୍ ପ୍ରାପ୍ତ ଶ୍ରମବଜାରର ଚାହିଦା ନିଶ୍ଚୟ ଅଧିକ । ଏକଥା ସମସ୍ତେ ମନେ ରଖିବା ଉଚିତ ଯେ ଆମ ଦେଶରେ ୨୦୦୭ ରୁ ୨୦୧୨ ମଧ୍ୟରେ (ପାଞ୍ଚବର୍ଷରେ) ସମୁଦାୟ ୨.୭ ମିଲିୟନ ଶ୍ରମ ନିଯୁକ୍ତି (Additional Jobs) ସୃଷ୍ଟି ହୋଇଥିଲା । ଆବଶ୍ୟକତା ତୁଳନାରେ ଏହା ଯଥେଷ୍ଟ କମ୍ ଥିଲା । ଯେଉଁଥିପାଇଁ ୨୦୦୯ରେ ଗୋଟିଏ ନୀତି (National Skill Policy-2009) ପ୍ରଣୟନ ହେଲା ଏବଂ ୨୦୧୫ରେ ଏହାର ପରିମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶ ପାଇଲା । ଏହି ନୀତିର ମୂଳ ଲକ୍ଷ୍ୟ ହେଲା ଶ୍ରମ ବଜାରକୁ ସୁସଂଗଠିତ ଓ ସୁଦୃଢ଼ କରିବା । କିନ୍ତୁ ଏଥିରେ ଗ୍ରାମୀଣ ମୂଲିଆ ବଜାର ବା ସହର ମୂଲିଆ ବଜାର କେତେଦୂର ପ୍ରଭାବିତ ହେବ ଭବିଷ୍ୟତ କହିବ ।

ଦେଶର ଆଭ୍ୟନ୍ତରୀଣ ଚାହିଦାକୁ ପ୍ରଥମେ ଦୃଷ୍ଟିରେ ରଖିବା ଦରକାର ଏବଂ ଏଥି ସହିତ ଭାରତର ଦୀର୍ଘଦିନଧରି ଚାଲି ଆସିଥିବା ସାମାଜିକ ସ୍ଥିତିକୁ ଦେଖି ମୂଲିଆ ବଜାର ସୃଷ୍ଟି ହେବା ଦରକାର । ଦେଶରେ ଥିବା ବିଭିନ୍ନ ଆୟକାରୀ ବର୍ଗ ଯଥା କେଉଟ, ଗଉଡ଼, କୁମ୍ଭାର, କମାର, ଚମାର, ତନ୍ତୀ ଆଦି ପରିବାର ପାଖରେ ଥିବା ଜ୍ଞାନ-କୌଶଳ ଓ ଅଭିଜ୍ଞତା ଆଧାରରେ ଏହିସବୁ କୌଶଳ ତାଲିମର ବ୍ୟବସ୍ଥା କରାଗଲେ ଭଲ ହୋଇଥାନ୍ତା ।

ମୋଟ ଉପରେ ମୂଲିଆ ବଜାର ସୃଷ୍ଟିବେଳେ ସମୂହ ଶକ୍ତି ପ୍ରସ୍ତୁତକାରୀ କେନ୍ଦ୍ର (Integrated Capacity building) ପ୍ରସ୍ତୁତ କରିବାର ଦୃଷ୍ଟାନ୍ତ ସୃଷ୍ଟିହେବା ଦରକାର । ଏଥି ସହିତ ଏମାନଙ୍କର ସାମାଜିକ ନିରାପତ୍ତା ଯଥା ସ୍ୱାସ୍ଥ୍ୟଗତ, ଦୁର୍ଘଟଣା ଜନିତ ଓ ବାର୍ଦ୍ଧକ୍ୟଜନିତ ଆବଶ୍ୟକତାକୁ ଦେଖି ଏକ ସାର୍ବଜନିନ ବ୍ୟବସ୍ଥା ହେବା ଦରକାର । ଏମାନେ ସମସ୍ତେ ପଞ୍ଜିକୃତ ହୋଇ ଏକ ନିୟନ୍ତ୍ରିତ ଯୋଗାଣ ଭିତ୍ତିରେ ନିଯୁକ୍ତି ପାଇବେ । ଯେଉଁମାନେ ଯେଉଁଦିନ କାର୍ଯ୍ୟ ନପାଇବେ ସେମାନଙ୍କ ପାଇଁ ଅନ୍ତତଃ ଧାର୍ଯ୍ୟ ମଜୁରୀର ୧/୩ ଅଂଶ ଭତ୍ତାଭାବେ ଦେବାର ବ୍ୟବସ୍ଥା (Sustenance Allowance) ରହିବା ଦରକାର । ସବୁ ହାତକୁ, ସବୁ ସମୟପାଇଁ କାର୍ଯ୍ୟ ଯୋଗାଣ ସହିତ ସବୁ ବର୍ଗ ଖଟିଖିଆ ଦୈନନ୍ଦିନ ରୋଜଗାର କ୍ଷମତା, ଅନ୍ୟ ଅର୍ଥରେ ଆବଶ୍ୟକ କ୍ରୟ ଶକ୍ତି (Purchasing Power) ବୃଦ୍ଧିର କ୍ରମବିକାଶ ସମସ୍ତ ଯୋଜନାର ମୂଳ ଲକ୍ଷ୍ୟ ହେବା ଦରକାର । ସବୁ କର୍ମନିଯୁକ୍ତି ସରକାର କରି ନଥାନ୍ତି କିନ୍ତୁ ସମସ୍ତ କର୍ମ ଯୋଜନା ଓ ପ୍ରସ୍ତୁତି ସରକାରଙ୍କର ଧାୟ ହେବା ବାଞ୍ଛନୀୟ । ଗୋଟିଏ ଉଦାହରଣ ନିଆଯାଇପାରେ । ପ୍ରାଣୀଧନ ସ୍ୱାସ୍ଥ୍ୟ ବ୍ୟବସ୍ଥା ନିମନ୍ତେ ସରକାର ଅବଶ୍ୟ ସେବାକେନ୍ଦ୍ର ଖୋଲିବେ ଓ ଆବଶ୍ୟକ ମୁତାବକ ପଶୁ ଡାକ୍ତର ଓ ଲାବରଟୋରୀ ସହାୟକ ଆଦି ଖୋଲିବା ଦରକାର । ମାତ୍ର ଅନେକ ଭାବେ ଶିକ୍ଷିତ ଯୋଗ୍ୟ ଡାକ୍ତର ସହ, କୁଶଳୀ ସହାୟକ ବହୁସଂଖ୍ୟାରେ ସୃଷ୍ଟି କରିବା ସହିତ ପ୍ରତିଗ୍ରାମ ପଞ୍ଚାୟତରେ ଯେପରି ଗୋଟିଏ ଗୋଟିଏ ପ୍ରାଣୀଧନ ସହାୟକ କେନ୍ଦ୍ର ଖୋଲାଯିବ ତା'ର ବ୍ୟବସ୍ଥା କଲେ ଅନେକ ଆତ୍ମନିଯୁକ୍ତି ମିଳିବା ସହିତ ପ୍ରାଣୀଧନ ଚିକିତ୍ସା ବ୍ୟବସ୍ଥା ସହଜଲବ୍ଧ ହୋଇପାରିବ । ଏହିସବୁ ଅତ୍ୟାଧୁନିକ ପ୍ରାଣୀଧନ ସହାୟକ କେନ୍ଦ୍ରପାଇଁ ସରକାର ଅଳ୍ପ ସୁଧହାରରେ ଋଣ ଦେବାର ବ୍ୟବସ୍ଥା କରିବା ଜରୁରୀ । ଅନେକ ବ୍ୟବସ୍ଥା ସଂଗଠିତ ହୋଇପାରିଲେ ଅସଂଗଠିତ ସବୁବର୍ଗର ରୋଜଗାରକ୍ଷମ ବ୍ୟକ୍ତି ବିଶେଷ କାର୍ଯ୍ୟ ଓ ରୋଜଗାରର ସୁଯୋଗ ନିଶ୍ଚୟ ପାଇବେ । ସରକାରଙ୍କ ଉପରେ ନିଯୁକ୍ତି ପାଇଁ ନିର୍ଭରଶୀଳ ହେବେ ନାହିଁ ।



# ଅସଂଗଠିତ ଶ୍ରମିକ ଓ ଓଡ଼ିଶା

ଓଡ଼ିଶାରେ ଅସଂଗଠିତ ଶ୍ରମିକଙ୍କ ସଂଖ୍ୟା ବ୍ୟାପକ ଓ ସମସ୍ୟା ଅତ୍ୟନ୍ତ ଜଟିଳ । ଯେହେତୁ ରାଜ୍ୟରେ କ୍ଷୁଦ୍ର ଓ ମଧ୍ୟମ ଚାଷୀଙ୍କ ସଂଖ୍ୟା ସମସ୍ତ ଚାଷୀଙ୍କ ଭିତରେ ୮୫% ରୁ ଅଧିକ ଏବଂ ଏହା ଦିନକୁ ଦିନ ବଢ଼ି ବଢ଼ି ଚାଲିଛି ଓ ସମସ୍ୟା ବି ଜଟିଳ ହେବାରେ ଲାଗିଛି । ସେମାନେ କିଛି ସମୟପାଇଁ ନିଜ ଜମିରେ କାମ କରନ୍ତି ଓ ଅନ୍ୟ ସମୟରେ ମୂଲ ମଜୁରୀ ଲାଗିବାକୁ ଯାନ୍ତି । ରାଜ୍ୟର ଗୋଟିଏ ବ୍ୟାପକ ଅଞ୍ଚଳର ଶ୍ରମିକ କାମ ନପାଇ ଅନ୍ୟ ରାଜ୍ୟକୁ ଦାଦନ ଖଟିବାକୁ ଯା'ନ୍ତି । ଏମାନଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି । ଏଠିକାର ତନ୍ତି, କୁମ୍ଭାର, କମାର, କେଉଟ, ଗଉଡ଼ ଅନେକ ସମୟରେ ନିଜ ବୃତ୍ତି ବ୍ୟତିତ ଅନ୍ୟଠି ଶ୍ରମିକ ଭାବେ କାର୍ଯ୍ୟ କରନ୍ତି । ଏମାନେ ମଜୁରୀ ଲାଗିବାରେ ଅଭ୍ୟସ୍ତ ନୁହଁନ୍ତି । ହେଲେ ମୂଲ ଲାଗିବାକୁ ବାଧ୍ୟ ହୋଇଥାନ୍ତି । ଅନ୍ୟ ପକ୍ଷରେ ସ୍ୱଞ୍ଚ ଆଇରନ କାରଖାନା ସମେତ ଶହଶହ ମଧ୍ୟମ ଓ କ୍ଷୁଦ୍ର ଶିଳ୍ପସଂସ୍ଥା ବନ୍ଦ ହୋଇଯିବା ଓ ଖଣିଖାଦାନର ଶ୍ରମିକ ଛଟେଇ ହେବା ଫଳରେ ଅସଂଗଠିତ ଶ୍ରମିକ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । କାମ ନକରି ବସି ରହିଲେ ପରିବାର ଅଭାବରେ ଛଟପଟ ହୁଏ ଅବା ସାଧାରଣରେ ସମାଲୋଚନା ହୁଏ ଯେ ଏମାନେ ବି.ପି.ଏଲ୍. ଚାଉଳକୁ ନେଇ ଆୟସ କରୁଛନ୍ତି ।

ଓଡ଼ିଶାପାଇଁ ଅସଂଗଠିତ ଶ୍ରମିକଶ୍ରେଣୀ ବଡ଼ ଚିନ୍ତାର କାରଣ । କେନ୍ଦ୍ର ସରକାର ୨୦୦୮ରେ ଅସଂଗଠିତ ଶ୍ରମିକ ସାମାଜିକ ନିରାପତ୍ତା ଆଇନ ପ୍ରଣୟନ କଲେ ଓ ପରେ ପରେ ଓଡ଼ିଶାରେ ୨୦୧୦ରେ ଓଡ଼ିଶା ଅସଂଗଠିତ ଶ୍ରମିକ ସାମାଜିକ ନିରାପତ୍ତା ବିଧି (Rules) ପ୍ରଣୟନ କଲେ । ପରେପରେ ୨୦୧୧ ଡିସେମ୍ବର ୨୨ ତାରିଖରେ ଶ୍ରମ ମନ୍ତ୍ରୀଙ୍କ  ଅଧ୍ୟକ୍ଷତାରେ ଏକ ବୋର୍ଡ଼ ଗଠନ କରାଯାଇଛି ଏବଂ ୪ମାର୍ଚ୍ଚ ୨୦୧୩ରିଖରେ ଏକ ସବ୍ କମିଟି ଶ୍ରମ କମିଶନଙ୍କ ଅଧ୍ୟକ୍ଷତାରେ କରାଯାଇଥିଲା । ଏହି ସବ୍ କମିଟି ଅଣ ସଂଗଠିତ କ୍ଷେତ୍ରରେ କାମ କରୁଥିବା ଶ୍ରମିକମାନଙ୍କୁ ଚିହ୍ନଟ, ପଞ୍ଜିକରଣ ଏବଂ ପରିଚୟ ପତ୍ର ପ୍ରଦାନ ଓ ଏହାର ସୁପରିଚାଳନା ନିମନ୍ତେ ତଥା ଅଧିକାରୀ ଏବଂ କର୍ମଚାରୀମାନଙ୍କୁ ନିଯୁକ୍ତି ଦେବାଆଦି ପାଇଁ ବ୍ୟବସ୍ଥା ନିରୂପଣ କରିବାର ଦାୟିତ୍ୱ ଦେଲେ । ଏହା ସଂଗେ ସଂଗେ ରାଜ୍ୟରେ ଏହି ଆଇନକୁ ଠିକ୍ ଭାବେ କାର୍ଯ୍ୟକାରୀ କରିବା ପାଇଁ ଆର୍ଥିକ ବରାଦ କରିବା ନିମନ୍ତେ ଖସଡ଼ା ପ୍ରସ୍ତୁତି

କରିବାକୁ ପରାମର୍ଶ ଦେଲେ । ଏହି ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଜିଲ୍ଲା ପ୍ରଶାସନକୁ କାର୍ଯ୍ୟଭାର ନ୍ୟସ୍ତ କରାଯାଇଛି ।

କେନ୍ଦ୍ର ସରକାରଙ୍କ ଶ୍ରମ ବିଭାଗ, ଅଣ ସଂଗଠିତ ଶ୍ରମିକବର୍ଗଙ୍କୁ ୪ଟି ଗୋଷ୍ଠୀରେ ବିଭକ୍ତ କରିଛନ୍ତି । ଯାହାକୁ ଭିତ୍ତିକରି ଓଡ଼ିଶାର ଚିତ୍ର ମଧ୍ୟ ପ୍ରତିଫଳିତ ହୋଇଥାଏ ।

ପ୍ରଥମତଃ ବୃତ୍ତିଗତ । କ୍ଷୁଦ୍ର ଓ ନାମମାତ୍ର ଚାଷୀ, ଭୂମିହୀନ କୃଷି ଶ୍ରମିକ, ଭାଗଚାଷୀ, ମତ୍ସଜୀବୀ, ଗୋପାଳକ, ବିଡ଼ି ଶ୍ରମିକ, ନିର୍ମାଣ ଶ୍ରମିକ, ଚମଡ଼ା ଶ୍ରମିକ, ଲୁଗାବୁଣାଳୀ, କାରିଗର, ଶିଳ୍ପୀ, ଲୁଣ ମାରୁଥିବା ଶ୍ରମିକ, ଇଟାଭାଟି ଶ୍ରମିକ, ପଥର ଖାଦନ ଶ୍ରମିକ, କରତ କଳ ଓ ତେଲ ପେଡୁଥିବା କାରଖାନାର ଶ୍ରମିକ ଇତ୍ୟାଦି ଏହି ଶ୍ରେଣୀ ଅନ୍ତର୍ଭୁକ୍ତ ।

ଦ୍ୱିତୀୟବିଭାଗଟି ହେଉଛି ପାରମ୍ପରିକ । ଚାଷ କାର୍ଯ୍ୟରେ ଲାଗିଥିବା କୃଷି ଶ୍ରମିକ, ଗୋତି ଶ୍ରମିକ, ଦାଦନ ଶ୍ରମିକ, ଠିକା ଶ୍ରମିକ ଏବଂ ସାମୟିକ କାର୍ଯ୍ୟ ନିର୍ବାହୀ ଶ୍ରମିକ (Casual Workers) ପ୍ରଭୃତି ଏହି ଦ୍ୱିତୀୟ ବର୍ଗ ପାରମ୍ପରିକ କ୍ଷେତ୍ରର ଶ୍ରମିକ ଭାବେ ପରିଚିତ ।

ତୃତୀୟ ବର୍ଗର ଶ୍ରମିକ ଶ୍ରେଣୀ ଗୋଟିଏ ପୂର୍ଣ୍ଣ ଅଭାବୀ ଗୋଷ୍ଠୀ । ଏଥିରେ ଜରି ଗୋଟାଳୀ, ପାଇଖାନା ସଫା କରୁଥିବା ଶ୍ରମିକ (Scavenger), ଝାଡୁଦାର, ମୁଣ୍ଡରେ ବା ପିଠିରେ ବୋଝ ବୋହୁଥିବା ମୋଟିଆ, ପଶୁ ଚଳାଉଥିବା ଯାନର ଚାଳକ ପ୍ରଭୃତି ଅନ୍ତର୍ଭୁକ୍ତ । ଏହି ବର୍ଗର ଶ୍ରମିକମାନେ ଖଟନ୍ତି ସିନା ଏମାନଙ୍କ ପାଇଁ ନିର୍ଦ୍ଧାରିତ ନିମ୍ନତମ ମଜୁରୀର ମାନେ କିଛି ନାହିଁ ।

ଅନ୍ୟଟି ହେଉଛି ସେବା ଦେଉଥିବା ଗୋଷ୍ଠୀ । ଘରୋଇ ଚାକର, ଚାକରାଣୀ, ମାଛ ବିକୁଥିବା କେଉଟୁଣୀ, ଧୋବା, ଭଣ୍ଡାରୀ, ପରିବା ଓ ଫଳର ବୁଲାବିକାଳି ଏବଂ ଘର ଘର ବୁଲି ସମ୍ବାଦପତ୍ର ଦେଉଥିବା ବିକାଳି ପ୍ରଭୃତି ଏହି ଶ୍ରେଣୀଭୁକ୍ତ ।

ଏହା ବ୍ୟତୀତ ଅନ୍ୟାନ୍ୟ ଅସଂଗଠିତ କ୍ଷେତ୍ରରେ କାମ କରୁଥିବା ଯଥା ଚିତ୍ରକାର, ହସ୍ତଶିଳ୍ପ କାରିଗର, ହସ୍ତତନ୍ତ ବୁଣାଳୀ, ପୁରୁଷ ଓ ମହିଳା ଦର୍ଜୀ, ଭିନ୍ନକ୍ଷମ ସ୍ୱାବଲମ୍ବୀ କାରିଗର, ରିକ୍ସା ଚାଳକ, ଅଟୋ ଡ୍ରାଇଭର ଏବଂ ସହରର ଗରିବ ଦିନ ମଜୁରିଆ, ଯାହାଙ୍କ କାର୍ଯ୍ୟ ସଂପର୍କରେ ସମସ୍ତେ ଜ୍ଞାତ, ସେମାନେ ସମସ୍ତେ ଅସଂଗଠିତ ଶ୍ରମିକ ।

ଅଣ ସଂଗଠିତ ଶ୍ରମିକ ମାନଙ୍କ ପାଇଁ ସମାଜିକ ନିରାପତ୍ତା ଆଇନ୍, ୨୦୦୮ରେ ନିରୂପଣ କରଯାଇଛି । ଏହି ସଂଜ୍ଞା ଅନୁସାରେ-ଆଇନର ଧାରା (୨) (ଏମ୍)

କୁହାଯାଇଛି କି ଅଣସଂଗଠିତ ଶ୍ରମିକ ଅର୍ଥାତ୍ ଘରୋଇ ଶ୍ରମିକ, ସ୍ୱାବଲମ୍ବୀ ଶ୍ରମିକ ଏବଂ ସଂଗଠିତ କ୍ଷେତ୍ରରେ ଅର୍ଥାତ୍ କଳକାରଖାନା ତଥା ସରକାରୀ ବ୍ୟବସ୍ଥାରେ କର୍ମରତ ସମସ୍ତ ଶ୍ରମଜୀବୀ ଯେଉଁମାନେ ଅନୁସୂଚି ୨ର ଅନ୍ତର୍ଭୁକ୍ତ ହୋଇ ନଥିବେ ଏଇ ସମସ୍ତେ ହିଁ ଅସଂଗଠିତ ଶ୍ରମିକ ଅନ୍ତର୍ଭୁକ୍ତ । ଏହି ଆଇନର ଅନୁସୂଚି-୨ରେ ଅନ୍ତର୍ଭୁକ୍ତ ହେଉନଥିବା ଶ୍ରମିକକୁ ନିଆଯାଇଛି । ଅର୍ଥାତ୍ ଅନୁସୂଚି – ୨ର ଆଇନ୍ ଗୁଡ଼ିକ ହେଲା (୧) ଶ୍ରମିକ କ୍ଷତିପୂରଣ ଆଇନ୍ ୧୯୨୩(୨) ଶିଳ୍ପ ବିବାଦ ଆଇନ ୧୯୪୭ (୩) କର୍ମଚାରୀ ରାଜ୍ୟ ବୀମା ଆଇନ୍ ୧୯୪୯ (୪) କର୍ମଚାରୀ ଭବିଷ୍ୟନିଧି ପାଣ୍ଠି ଏବଂ ଅନ୍ୟାନ୍ୟ ବ୍ୟବସ୍ଥା ଆଇନ୍ ୧୯୫୨ (୫) ମାତୃତ୍ୱ ସୁବିଧା ଆଇନ୍ ୧୯୬୧ (୬) ପାରିତୋଷିକ (ଗ୍ରାଚ୍ୟୁଇଟି) ପ୍ରଦାନ ଆଇନ୍ ୧୯୭୨ । ଅନ୍ୟ ଅର୍ଥରେ କହିବାକୁ ଗଲେ ଏସବୁ ଶ୍ରମ ଆଇନରେ ଯେଉଁମାନେ ସୁବିଧା ପାଇପାରୁ ନଥିବେ, ସେମାନେ ଅଣସଂଗଠିତ ଶ୍ରମିକ ସାମାଜିକ ନିରାପତ୍ତା ଆଇନର ବ୍ୟବସ୍ଥାରୁ ସୁବିଧା ପାଇ ପାରିବେ ।

ସେହିପରି ଏହି ଆଇନରେ ଉଲ୍ଲେଖ ଅଛି ଯେ ଯେଉଁମାନେ କୌଣସି ମାଲିକମାନଙ୍କ ପାଖରେ କାମ କରୁନଥିବେ, କିନ୍ତୁ ପୁରୁଷ/ମହିଳା ନିଜକୁ ନିଯୋଜିତ କରି କିଛି ଉତ୍ପାଦନ ବା ଜିନିଷ ପ୍ରସ୍ତୁତି କରୁଥିବେ, କିମ୍ବା ସଂଗଠିତ କ୍ଷେତ୍ରରେ କୌଣସି ବୃତ୍ତି କରୁନଥିବେ ଯାହାକି କେନ୍ଦ୍ର ସରକାର କିମ୍ବା ରାଜ୍ୟ ସରକାରଙ୍କ ବିଜ୍ଞପ୍ତି ଦ୍ୱାରା ମାସିକ ରୋଜଗାର ମିଳୁନଥିବ ସେମାନେ ସମସ୍ତେ ଏହି ସ୍ୱାବଲମ୍ବୀ ଶ୍ରମିକ ଶ୍ରେଣୀର ଅନ୍ତର୍ଭୁକ୍ତ । ଅଣସଂଗଠିନ୍ତ କ୍ଷେତ୍ରଗୁଡ଼ିକ ହେଲା ଯେଉଁ ବ୍ୟକ୍ତିମାନେ କିମ୍ବା ସ୍ୱାବଲମ୍ବୀ ଶ୍ରମକମାନେ ନିଜର ଉଦ୍ୟୋଗ ଥିବ ଓ ପାରମ୍ପରିକ ବୃତ୍ତିରେ ଉତ୍ପାଦନ କରୁଥିବେ ବିକ୍ରିବଟା କରୁଥିବେ ବା ସେବା ପ୍ରଦାନ କରୁଥିବେ ଓ ଯେଉଁ ସଂସ୍ଥାମାନଙ୍କରେ ଶ୍ରମିକଙ୍କ ସଂଖ୍ୟା ୧୦ରୁ କମ୍ ଥିବ ସେହି ସବୁ ଶ୍ରମିକ ଅଣସଂଗଠିତ ଶ୍ରମିକ ଭାବେ ପରିଚିତ ।

ଅନ୍ୟଏକ ବ୍ୟାପକ ଅର୍ଥରେ ସ୍ୱାବଲମ୍ବୀ କାରିଗରମାନେ ହେଲେ ବିଡ଼ି କାରିଗର, ଲୁଣମରା ଶ୍ରମିକ, ରିକ୍ସା ବାଲା, ଅଟୋଡ୍ରାଇଭର, ଜୋତା କାରିଗର, ରଙ୍ଗ ମିସ୍ତ୍ରୀ, ପଥର ମିସ୍ତ୍ରୀ, ପଥର ଶିଳ୍ପୀ, ଲୁଗା ସିଲେଇ ମିସ୍ତ୍ରୀ(ଦରଜୀ), ଶ୍ରମିକ ନଥିବା ଘ ବା ପାନ ଦୋକାନୀ, କ୍ଷୁଦ୍ର ବ୍ୟବସାୟୀ ପ୍ରତିଷ୍ଠାନର କର୍ମଚାରୀ, ରାସ୍ତା କଡ଼ର ବ୍ୟବସାୟୀ ଓ ସମ୍ବାଦପତ୍ର ବାଣ୍ଟୁଥିବା ଲୋକ । ଭାରତ ବର୍ଷରେ ସ୍ୱାବଲମ୍ବୀ କର୍ମଜୀବୀ ବହୁ କ୍ଷେତ୍ରରେ ଜାତି ଭିତ୍ତିକ । ଓଡ଼ିଶାରେ ମଧ୍ୟ ଅନୁରୂପ ଶ୍ରେଣୀ ଦେଖାଯାଇଥାଏ ।

ତାହାହେଲା ଚଷା, ମୋଚି, ବଢ଼େଇ, କମାର, ତେଲି, ପାଟରା, ବଣିଆ, କେଉଟ,କଣ୍ଡରା, କଂସାରି, କାଚରା, ତନ୍ତୀ, କୁମ୍ଭାର ଓ ଗୁଡ଼ିଆ ଇତ୍ୟାଦି । କିନ୍ତୁ ସାମାଜିକ ବ୍ୟବସ୍ଥା ଅନୁସାରେ ସରଞ୍ଜାମ ତିଆରି କରୁଥିବା, ଯେଉଁମାନେ କାଠ କାମ କରୁଥିବେ ବଢ଼େଇ କାମ, ଲୁହା କାମ କରିଥିବେ କମାର, ଚିତ୍ରକାର, ଲୁଗାବୁଣା ତନ୍ତୀ ଏବଂ ମାଛ ବିକ୍ରି କରୁଥିବା ମତ୍ସ୍ୟଜୀବୀ (କେଉଟ, କୁକୁଡ଼ା, ଅଣ୍ଡା ବିକ୍ରି କରୁଥିବା କିମ୍ବା ମାଂସ ବିକାଳୀ, ନଡ଼ିଆ ଗଛ ଝାଡୁଥିବା ଚମାର ସେମାନେ ସମସ୍ତେ ଅସଂଗଠିତ ଶ୍ରମିକ ଶ୍ରେଣୀଭୁକ୍ତ । କେନ୍ଦୁପତ୍ର ତୋଳାଳୀ, ଶାଳପତ୍ର, ଜାଳେଣୀ କାଠ ସଂଗ୍ରହ କରୁଥିବା ଲୋକ, ଜଙ୍ଗଲଜାତ ଦ୍ରବ୍ୟ ସାଉଁଟୁଥିବା ଲୋକମାନେ ମଧ୍ୟ ଅସଂଗଠିତ ଶ୍ରମିକ । କମିସନ୍ ଏଜେଣ୍ଟ କିମ୍ବା ଅର୍ଥ ଲଗାଣକାରୀ ସାହୁକାର କର୍ମ ନିଯୁକ୍ତି ଦେଇଥିବା ଦୋକାନୀ ଏ ଗୋଷ୍ଠୀର ଅନ୍ତର୍ଭୁକ୍ତ ନୁହନ୍ତି । ବଡ଼ ଚାଷୀ ବା ଋଷକାମ କରୁଥିବେ ଜମିଦାର ନୁହଁ । ଏହିସଂଗଠିତ ଶ୍ରମିକ ଶ୍ରେଣୀର ନୁହଁନ୍ତି । ଶିଳ୍ପୀ, ମିସ୍ତ୍ରୀ, ମେସିନ୍, ସହାୟକ, ଛାଞ୍ଚୁଣି/କୁଣ୍ଡୀ ବୁଣା ଓ ବିକ୍ରି କରୁଥିବା ଶ୍ରମିକ (ଯଥା ହାଡ଼ି, ମେଦରା, ଚମାର ଇତ୍ୟାଦି), ମାଟି କାରିଗର (କୁମ୍ଭାର), ରୂପକାର, ଶିଙ୍ଗ କାରିଗର, ବାଉଁଶ କାରିଗର, ହସ୍ତତନ୍ତ କାରିଗର ଧୋବା, ଭଣ୍ଡାରୀ, ମୋଚି, ଚମାର, ପାସି, ମେହେନ୍ତର ମତ୍ସଜୀବୀ, ପାରମ୍ପରିକ ଭାବେ କାଠ ଓ ଅନ୍ୟାନ୍ୟ ବନ୍ୟଜାତ ପଦାର୍ଥ ସଂଗ୍ରହ କରି ବିକ୍ରିବଟା କରୁଥିବା ଶ୍ରମିକ, ଆଦିବାସୀମାନେ ଅସଂଗଠିତ ଶ୍ରମିକ ଶ୍ରେଣୀଭୁକ୍ତ ।

ଏହି ଆଇନରେ ମଜୁରିର ସଂଜ୍ଞା ନିରୂପଣ କରାଯିବାକୁ ଧାରା ୨(ଏନ୍)ର ଦିନମଜୁରିଆର ସଂଜ୍ଞା ନିରୂପଣ କରାଯାଇଛି । ଜଣେ ବ୍ୟକ୍ତି ପାରିଶ୍ରମିକ ପାଇଁ ଅଣ ସଂଗଠିତ କ୍ଷେତ୍ରରେ ଜଣେ ମଣିଷ ପାଖରେ ପ୍ରତ୍ୟକ୍ଷ ଭାବରେ କିମ୍ବା ଯେକୌଣସି ଠିକାଦାର ମାଧ୍ୟମରେ କାମ କରିଥାଏ ତାକୁ ଦିନ ମଜୁରିଆ କୁହାଯାଇଛି । ଉକ୍ତ ମଜୁରିଆଟି ଯେକୌଣସି ଜାଗାରେ, ନିର୍ଦ୍ଦିଷ୍ଟ ମାଲିକ ପାଖରେ କିମ୍ବା ଏକ ବା ତତୋଧିକ ମାଲିକ ପାଖରେ କାମକରି ପାଉଣା ପଇସା ଆକାରରେ କିମ୍ବା ଜିନିଷ ଆକାରରେ ଆଣିପାରିଥାଏ । ଏମାନେ ସହରାଞ୍ଚଳରେ ବେଶି ଭିଡ଼ ଜମାଇଥାନ୍ତି । ବଡ଼ ବନ ମୂଲିଆ ବଜାର ସୃଷ୍ଟି କରିଥାନ୍ତି । ଉଦାହରଣ ସ୍ୱରୂପ ଭୁବନେଶ୍ୱରସ୍ଥିତ ନୂଆପଲ୍ଲୀ ଜାତୀୟ ରାଜପଥ କଡ଼ର ବଜାର କଥା କୁହାଯାଉ । ଏସବୁ ଅସଂଗଠିତ ଶ୍ରମିକମାନେ ମୁଖ୍ୟତଃ ଅଣକୁଶଳୀ । ଜଗତିକରଣ ପ୍ରଭାବରେ ସରକାରୀ କାର୍ଯ୍ୟରେ ମଧ୍ୟ ଅନେକ ଶ୍ରମିକ କାଜୁଆଲ ଶ୍ରମିକ ଓ୍ୱାର୍କଚର୍ଜ ଶ୍ରମିକ ଓ ଦିନମଜୁରିଆ (Daily wage earner)(C.L.R/

D.L.R/HR worker/work change warker) ଭାବରେ ନିଯୁକ୍ତ । ଏମାନେ ସମସ୍ତେ ଅସଂଗଠିତ ଶ୍ରମିକ କିନ୍ତୁ କୁଶଳୀ, ଅର୍ଦ୍ଧକୁଶଳୀ, ଉଚ୍ଚକୁଶଳୀ ଶ୍ରେଣୀଭୁକ୍ତ ଅଟନ୍ତି ।

ଶ୍ରମ ଆଇନ ଅନୁସାରେ ସବୁବର୍ଗର ଅସଂଗଠିତ ଶ୍ରମିକଙ୍କୁ ଠାବକରି ପଂଜିକୃତ କରି ସୁବିଧା ସୁଯୋଗ ଯୋଗାଇଦେବା ଦୁରୁହ ବ୍ୟାପାର । ସେଥିପାଇଁ କେତେଗୋଟି ସାର୍ବଜନୀନ ନିରାପତ୍ତା ରାଜ୍ୟ ସରକାର ଯୋଗାଇଦେଲେ ଏକ ଜନମଙ୍ଗଳକାରୀ ରାଷ୍ଟ୍ରର ଦାୟିତ୍ୱ ଲିଭେଇବେ । ଯେପରିକି ସମସ୍ତ ୬୦ ବର୍ଷରୁ ଊର୍ଦ୍ଧ୍ୱ ବ୍ୟକ୍ତିଙ୍କୁ ସେହି ସମୟର ଉଚ୍ଚକୁଶଳୀ ମଜୁରୀ )(High Skilled wage)ର ମାସିକ ମଜୁରୀର ଅର୍ଦ୍ଧେକ ହାରରେ ବାର୍ଦ୍ଧକ୍ୟ ଭତ୍ତା ଦେବା ଦରକାର । ଏଥିରୁ କେବଳ ସେହି ବ୍ୟକ୍ତିମାନେ (ଅନ୍ୟଭାବରେ ପାଉଥିବା ଉଚ୍ଚ ଦରର ବାର୍ଦ୍ଧକ୍ୟଭତ୍ତା ୫୦୦୦ ଟଙ୍କାରୁ ଊର୍ଦ୍ଧ୍ୱ) ଓ ଆୟକର ଦେଉଥିବା ବ୍ୟକ୍ତିମାନଙ୍କୁ ଏହି ସ୍କିମର ବାହାରେ ରଖାଯିବ । ସେହିପରି ବିଧବା, ଅସହାୟ, ଭିନ୍ନକ୍ଷମମାନଙ୍କୁ ତା'ର ବୟସ ୬୦ ବା ତଦୂର୍ଦ୍ଧ ହୋଇଥିଲେ ଏହି ଭତ୍ତା ଦିଆଯିବା ଦରକାର । ଅନ୍ୟ ଏକ ନିରାପତ୍ତା ହେଉଛି ସ୍ୱାସ୍ଥ୍ୟ ଓ ଦୁର୍ଘଟଣା ଜନିତ ବୀମା । ଅନ୍ତତଃପକ୍ଷେ ପ୍ରାୟ ପାଞ୍ଚଗୋଟି ବଡ଼ ଧରଣର ରୋଗ ଓ ଦୁର୍ଘଟଣା ନିମନ୍ତେ ମୋଟା ଅଙ୍କର ବୀମା ବ୍ୟବସ୍ଥା ହେବା ଦରକାର ଯେଉଁଥିରେ ସରକାର ୮୦% ଓ ବୀମା ଭୋଗକାରୀ ୨୦% ବୀମାରାଶି (ପ୍ରିମିୟମ) ଦେବାର ବ୍ୟବସ୍ଥା ହେବା ଦରକାର ଓ ଚିକିତ୍ସା ଖର୍ଚ୍ଚ ବା ଦୁର୍ଘଟଣା ଖର୍ଚ୍ଚ ଦିଆଯିବା ବୀମାରାଶି ଅତିକମ୍‌ରେ ୫ଲକ୍ଷ ଟଙ୍କାର ସୀମାଧାର୍ଯ୍ୟ ହେବା ଦରକାର । ସମସ୍ତ ଅସଂଗଠିତ ଶ୍ରମିକର ୩୦ ବର୍ଷରୁ ୬୦ ବର୍ଷ ପର୍ଯ୍ୟନ୍ତ ପୁରୁଷ ଓ ସ୍ତ୍ରୀମାନଙ୍କୁ ପ୍ରତି ପାଞ୍ଚବର୍ଷରେ ରାଜ୍ୟ ଭିତରେ ଗୋଟିଏ ସ୍ଥାନ ଓ ୧୦ ବର୍ଷରେ ଦେଶ ଭିତରେ ଗୋଟିଏ ସ୍ଥାନ (ଟୁରିଷ୍ଟ ବା ଧର୍ମାନୁଷ୍ଠାନ) ଯିବାର ବାଟଖର୍ଚ୍ଚ ଦିଆଯିବା ଦରକାର । ଉଚ୍ଚଶିକ୍ଷା ପାଇଁ (ରେଳ ଓ ବସ୍‌ରେ ମାଗଣା ଯାତ୍ରା) ଅସଂଗଠିତ ଶ୍ରମିକର ପୁଅ ଝିଅକୁ ୧୦ଲକ୍ଷ ଟଙ୍କା ପର୍ଯ୍ୟନ୍ତ ୧% ସୁଧହାରରେ ଶିକ୍ଷା ଋଣ ଦେବାର ଆବଶ୍ୟକ । ଏହି ସମସ୍ତ ନିରାପତ୍ତା ସହିତ ପୂର୍ଣ୍ଣ ଖାଦ୍ୟ ନିରାପତ୍ତାର ବ୍ୟବସ୍ଥା ରହିବା ଦରକାର । ଓଡ଼ିଶାରେ ଅସଂଗଠିତ ଶ୍ରମିକ ଶ୍ରେଣୀର ସାମାଜିକ, ଆର୍ଥିକ, ନିରାପତ୍ତା ଜନିତ ସମସ୍ୟା ଅଧିକ ମନେହୁଏ । ଏଣୁ ଏହାର ନିରାକରଣ ସୁସଂଗଠିତ, ସୁଚିନ୍ତିତ ଉପାୟରେ ହେବା ଜରୁରୀ ।

✿✿✿

# ଅସଂଗଠିତ ଶ୍ରମିକ ଓ ଶ୍ରମିକ ସଂଗଠନ

ଯେକୌଣସି ଶ୍ରମିକ ସଂଗଠନର ପ୍ରାରମ୍ଭିକ ଗଠନ ପ୍ରକ୍ରିୟା ଅତ୍ୟନ୍ତ କଷ୍ଟକର । କିନ୍ତୁ ଗୋଟିଏ ଜାଗାରେ ଠୁଳ ହୋଇଥିବା ଶ୍ରମିକମାନଙ୍କୁ ଏକତ୍ରୀତ କରି ସେମାନଙ୍କ ସମସ୍ୟାକୁ ନେଇ ଲଢ଼ିବା ଅଧିକ ସହଜ ସାପେକ୍ଷ । ସେଥିପାଇଁ ଶ୍ରମିକ ସଂଗଠନ ଓ ଶ୍ରମିକ ନେତାମାନେ ଏହି ସଂଗଠିତ ଶ୍ରମିକ ମାନଙ୍କୁ ନେଇ କାର୍ଯ୍ୟ କରିବାରେ ଅଧିକ ତତ୍ପର ଥିବାର ଦେଖାଯାଏ । ଏଥିରେ ସ୍ଥାୟୀ କର୍ମଚାରୀ ଓ ଶ୍ରମିକଙ୍କ ସହ କାଜୁଆଲ୍ ଶ୍ରମିକ, ଦିନ ମଜୁରିଆ, ଅସ୍ଥାୟୀ ଶ୍ରମିକ ମଧ୍ୟ ଥାନ୍ତି । ଅନ୍ୟ ଏକ ବିକ୍ଷିପ୍ତ ଶ୍ରମଜୀବୀମାନଙ୍କ ସମସ୍ୟା ସମାନ ଥିଲେ ଶ୍ରମିକ ସଂସ୍ଥାମାନେ ଏମାନଙ୍କୁ ନେଇ ଲଢ଼େଇ କରିବା ଆରମ୍ଭ କରିଦିଅନ୍ତି । ଯେପରିକି କେନ୍ଦୁପତ୍ର ତୋଳାଳୀ ସଂଘ, ରିକ୍ସାବାଲା ସଂଘ ମୋଟର କର୍ମଚାରୀ ସଂଘ ଇତ୍ୟାଦି । ବିକ୍ଷିପ୍ତଭାବେ ଶ୍ରମ କରୁଥିବା ଗୋଷ୍ଠିର ସୁରକ୍ଷା ପାଇଁ ଆଇନ ପ୍ରଣୟନ ହେବାମାତ୍ରକେ ଶ୍ରମିକ ୟୁନିୟନଗୁଡ଼ିକ ଏମାନଙ୍କ ପାଇଁ କାର୍ଯ୍ୟ କରିବା ଆରମ୍ଭ କରିଦିଅନ୍ତି । ଏ କ୍ଷେତ୍ରରେ ଶ୍ରମିକ ସଙ୍ଗଠନ ଅପେକ୍ଷା ସାମାଜିକ ସଂଗଠନଗୁଡ଼ିକ ଅଧିକ ସକ୍ରିୟଥିବା ପରି ଦେଖାଯାଏ । ଯେପରିକି ନିର୍ମାଣ ଶ୍ରମିକ, ବନ୍ଧୁଆ ଶ୍ରମିକ, ଶିଶୁ ଶ୍ରମିକ ଆଦି । କିନ୍ତୁ ଅନେକ ଶ୍ରମିକ ବିଛାଡ଼ି ହୋଇ ପଡ଼ିଛନ୍ତି ଯେଉଁମାନଙ୍କୁ ଧାର୍ଯ୍ୟ ନିମ୍ନତମ ମଜୁରୀ ମଧ୍ୟ ମିଳେ ନାହିଁ । ସେମାନଙ୍କର ସମସ୍ୟା ଅନେକ । ସେମାନଙ୍କ ମଧ୍ୟରେ ଋଷୀ, ମୂଲିଆ, ଦିନ ମଜୁରିଆ, ଜଙ୍ଗଲରେ ପତ୍ର, ମଞ୍ଜି, ସାଉଁଟୁଥିବା ଲୋକ ଆଦି ମଜୁରିଆ ଅଛନ୍ତି । ସେମାନଙ୍କର ପ୍ରଥମ ସମସ୍ୟାଟି ହେଉଛି ମଜୁରୀ ନିର୍ଦ୍ଧାରଣ ଓ ଏହାକୁ ସଠିକ୍ ଭାବେ କାର୍ଯ୍ୟକାରୀ କରିବାର ପ୍ରକ୍ରିୟାକୁ ସାବ୍ୟସ୍ତ କରିବା ।

ଏ ମଧ୍ୟରେକେନ୍ଦ୍ର ଶମ ଓ ନିୟୋଜନ ମନ୍ତ୍ରଣାଳୟ ପକ୍ଷରୁ ଖଣିଖାଦାନ, ନିର୍ମାଣ, ଲୋଡ଼ିଂ, ଅନଲୋଡ଼ିଂ, ପାର୍ସଲ ଓ ଗୋଦାମ ଗୃହରେ କାର୍ଯ୍ୟରତ ଶ୍ରମିକମାନଙ୍କର ସର୍ବନିମ୍ନ ମଜୁରି ହାର ପ୍ରକାଶ ପାଇଛି । ଅଣକୁଶଳୀ ମୂଲିଆଙ୍କ ପାଇଁ ଦୈନିକ

୨୩୬ଟଙ୍କା, ଅର୍ଦ୍ଧକୁଶଳୀ ମାନଙ୍କର ମଜୁରୀ ୨୯୪ ଟଙ୍କା, କୁଶଳୀଙ୍କର ୯୩୫୩ଟଙ୍କା ଓ ଅତିକୁଶଳୀ କାରିଗରଙ୍କର ମଜୁରି ୪୧୧ଟଙ୍କା ରଖା ଯାଇଛି । ସେହିପରି ମାଟିତଳେ କାର୍ଯ୍ୟ କରୁଥିବା ଅଣକୁଶଳୀ ଶ୍ରମିକମାନଙ୍କର ମଜୁରି ୨୯୪ଟଙ୍କା, ଅର୍ଦ୍ଧକୁଶଳୀ ମାନଙ୍କର ୯୩୫୩ଟଙ୍କା, କୁଶଳୀ ୯୪୧୧ଟଙ୍କା ଓ ଅତିକୁଶଳୀ ମଜୁରୀଆଙ୍କର ମଜୁରୀ ୪୭୬ ଟଙ୍କା ରଖାଯାଇଛି ।

ମଜୁରି ନିର୍ଣ୍ଣୟବେଳେ ସ୍ତର ଓ ସ୍ଥାନ ବିଶେଷରେ ମଧ ଏହା ଭିନ୍ନ ଭିନ୍ନ ରଖାଯାଇଛି । ଯେପରିକି କଟକ ଓ ଭୁବନେଶ୍ୱରରେ ଥିବା କେନ୍ଦ୍ରିୟ ସଂସ୍ଥା ଅଧିନରେ କାର୍ଯ୍ୟରତ ଶ୍ରମିକମାନଙ୍କ ପାଇଁ ଭିନ୍ନ ମଜୁରୀ ଧାର୍ଯ୍ୟ ହୋଇଛି । ଏତଦ୍‌ବ୍ୟତୀତ ଅନ୍ୟ ସହାରାଞ୍ଚଳର ଶ୍ରମିକମାନଙ୍କ ପାଇଁ ଭିନ୍ନ ମଜୁରି ଧାର୍ଯ୍ୟ ହୋଇଛି । କୃଷି ଶ୍ରମିକମାନଙ୍କ ପାଇଁ ଧାର୍ଯ୍ୟ କରାଯାଇଥିବା ମଜୁରିହାର ଅନୁସାରେ ଅଣକୁଶଳୀ ମଜୁରୀଆଙ୍କର ଦିନ ମଜୁରି ୨୦୬ଟଙ୍କା, ଅର୍ଦ୍ଧକୁଶଳୀମାନଙ୍କ ପାଇଁ୨୨୮ଟଙ୍କା, କୁଶଳୀମାନଙ୍କ ପାଇଁ ୨୪୭ଟଙ୍କା, ଅତିକୁଶଳୀମାନଙ୍କ ପାଇଁ ୨୭୬ଟଙ୍କା ବୃଦ୍ଧି କରାଯାଇଛି । ଏହା କଟକ ଭୁବନେଶ୍ୱର ଅନ୍ତର୍ଗତ କୃଷି ଶ୍ରମିକମାନଙ୍କ କ୍ଷେତ୍ରରେ ପ୍ରଜୁଜ୍ୟ । ଅଥଚ ଅନ୍ୟତ୍ର ଏହିହାର ଯଥାକ୍ରମେ ୨୦୪ଟଙ୍କା, ୨୦୯ଟଙ୍କା, ୨୨୭ଟଙ୍କା, ୨୪୭ଟଙ୍କା ରଖାଯାଇଛି ।

ଲୋଡ଼ିଂ ଏବଂ ଅନଲୋଡ଼ିଂ ରେଲୱେ କାର୍ଯ୍ୟାଳୟରେ ପାର୍ସଲରେ ନିଯୋଜିତ ଅଣକୁଶଳୀ ଶ୍ରମିକଙ୍କ ମଜୁରି ୨୯୪ ଟଙ୍କାକୁ ବୃଦ୍ଧି କରାଯାଇଥିବାବେଳେ ଭୁବନେଶ୍ୱର ଓ କଟକ ବାହାରେ କାର୍ଯ୍ୟରତ ଶ୍ରମିକଙ୍କ ମଜୁରି ୨୩୭ ଟଙ୍କାକୁ ବୃଦ୍ଧି କରାଯାଇଛି । କଟକ ଓ ଭୁବନେଶ୍ୱରରେ ସଫେଇ କାର୍ଯ୍ୟ କରୁଥିବା କର୍ମଚାରୀଙ୍କ ଦୈନିକ ମଜୁରି ୨୯୪ ଓ ଅନ୍ୟ ଅଞ୍ଚଳରେ କାର୍ଯ୍ୟରତ ଶ୍ରମିକଙ୍କ ଦୈନିକ ମଜୁରି ୨୩୬ ଟଙ୍କାକୁ ବୃଦ୍ଧି କରାଯାଇଛି । କଟକ ଓ ଭୁବନେଶ୍ୱରରେ ବିନା ବନ୍ଧୁକରେ ୱାଚ୍‌ମ୍ୟାନ୍ କାର୍ଯ୍ୟ କରୁଥିବା ଶ୍ରମିକଙ୍କୁ ୩୩୩ ଟଙ୍କା ଏବଂ ଅନ୍ୟ ଅଞ୍ଚଳ ପାଇଁ ୨୭୬ ଟଙ୍କା ଧାର୍ଯ୍ୟ କରାଯାଇଛି । ବନ୍ଧୁକଧାରୀ ୱାଚମ୍ୟାନଙ୍କ ଦୈନିକ ମଜୁରୀ ୩୯୦ ଟଙ୍କାକୁ ବୃଦ୍ଧି କରାଯାଇଥିବା ବେଳେ ପଥର ଭାଙ୍ଗିବା ଓ କ୍ରଶରଗୁଡ଼ିକରେ କାର୍ଯ୍ୟରତ ଶ୍ରମିକଙ୍କ ଦୈନିକ ମଜୁରି ୨୩୬ ଟଙ୍କାରୁ ଆରମ୍ଭ ହୋଇ ୬୦୨ ଟଙ୍କା ବୃଦ୍ଧି କରାଯାଇଛି ।

କେନ୍ଦ୍ରୀୟ ହାରଠାରୁ ସମାନ କାର୍ଯ୍ୟ କରୁଥିବା ଶ୍ରମିକଙ୍କ ପାଇଁ ରାଜ୍ୟ କମ୍ ଦର ଧାର୍ଯ୍ୟ କରିଛି । ଏପରି ଭିନ୍ନ ଭିନ୍ନ ହାର କାହିଁକି କରାଯାଏ ତାହା ଜଣା ପଡ଼େ

ନାହିଁ । ଅଣକୁଶଳୀ, ଅର୍ଦ୍ଧକୁଶଳୀ, କୁଶଳୀ ଆଦିଙ୍କ ପାଇଁ ଗୋଟିଏ ଗୋଟିଏ ଭିନ୍ନ ନିମ୍ନତମ ମଜୁରୀ ଧାର୍ଯ୍ୟ ଉଭୟ କେନ୍ଦ୍ର ଓ ରାଜ୍ୟ କରିବା ସହିତ, ରିସ୍କ ଆଲାଉନ୍‌ସ, ସହର ଅଲାଉନ୍‌ସ ଯାତାୟତା ଭତ୍ତାଆଦି କାର୍ଯ୍ୟ ଓ ସ୍ଥାନବିଶେଷକୁ ନେଇ ସଂଯୋଗକରି ଧାର୍ଯ୍ୟ କରାଗଲେ ବସ୍ତୁତଃ ସମଗ୍ର ଶ୍ରମିକ ଶ୍ରେଣୀକୁ ବିଭ୍ରାନ୍ତ କରାଯିବା ସଂମ୍ଭବ ହେବନାହିଁ । ଆଶ୍ଚର୍ଯ୍ୟ ଲାଗେ ସମସ୍ତ କେନ୍ଦ୍ରୀୟ ଶ୍ରମିକ ସଂଗଠନମାନେ ଏଥିପାଇଁ କାହିଁକି ସଂଘବଦ୍ଧ ଆନ୍ଦୋଳନ କରୁ ନାହାନ୍ତି ?

ଅନ୍ୟ ଦିଗପ୍ରତି ମଧ ଶ୍ରମିକ ସଂଗଠନ ଓ ଶ୍ରମିକ ନେତାମାନେ ଧାନ ଦେବା ଦରକାର । ଅଣକୁଶଳୀ, କୁଶଳୀ, ଅର୍ଦ୍ଧକୁଶଳୀ, ଅତିକୁଶଳୀ ଆଦି ବ୍ୟବସ୍ଥା ମଧ୍ୟରେ ଅନେକ କ୍ଷେତ୍ରରେ ସୂକ୍ଷ୍ମ ପରଦାଟିଏ ଥାଏ । ଏହାକୁ ହଟାଯାଇ ମାତ୍ର ଦୁଇଟି ବିଭାଗ ଅର୍ଦ୍ଧକୁଶଳୀ ଓ ଅତିକୁଶଳୀ ରଖାଯିବା ଦରକାର । ୱାଗନ ବା ଟ୍ରକରେଁ ଲୋଡ଼୍ କରୁଥିବା ବା ଅନ୍‌ଲୋଡ଼ିଂ କରୁଥିବା ଶ୍ରମିକ ବା ବିଲରେ ତଳି ରୋଉଥିବା ମୁଲିଆଙ୍କୁ କ'ଣ ଅଣକୁଶଳୀ କୁହାଯିବ । ମୁଣ୍ଡରେ ଇଟା ବା ସିମେଣ୍ଟ ନେଇ ବିପଦପୂର୍ଣ୍ଣ ସିଡ଼ିରେ ଉଠୁଥିବା ମୁଲିଆଣୀ କ'ଣ ଅଣକୁଶଳୀ । ଏଣୁ ସମସ୍ତ ଅଭ୍ୟସ୍ତ ମଜୁରିଆ ଜଣେ ଜଣେ ଅର୍ଦ୍ଧକୁଶଳୀ କାରିଗର ।

ସମସ୍ତ ଶ୍ରମିକ ସଂଗଠନ ଓ ବିଜ୍ଞ ଶ୍ରମିକ ନେତାଗଣ ମଜୁରି ନିର୍ଦ୍ଧାରଣ ସମୟରେ ମଜୁରି ନିର୍ଦ୍ଧାରଣ ପ୍ରକ୍ରିୟା ଉପରେ ଦୃଷ୍ଟି ରଖିବା ଦରକାର ।

ଶ୍ରମିକର ପ୍ରକୃତ (Nature of work) ଶ୍ରମ କରିବାର କୌଶଳ, ଜ୍ଞାନ ଆଦି ଠଉରେଇ ନେଲାପରେ ମଜୁରୀ ନିର୍ଦ୍ଧାରଣର ସୂକ୍ଷ୍ମାତି ସୂକ୍ଷ୍ମ ଦିଗଗୁଡ଼ିକ ପରିଷ୍କାର ହୋଇ ଉଠିଥାଏ । ଏଗୁଡ଼ିକର ହିସାବ ସହିତ ମଜୁରିର ଲକ୍ଷ୍ୟସ୍ଥଳ (Minimum wage) କିମ୍ବା (Fair wage) କିମ୍ବା (Living wage)କୁ ଯୋଗକରି ରେଖା ଟାଣିଲେ ତାହା ଉର୍ଦ୍ଧ୍ୱଗାମୀ ହୋଇଥାଏ । ମଜୁରୀ ବା ଦରମାର ଲକ୍ଷ୍ୟସ୍ଥଳ ବା ସ୍ତରଧାର୍ଯ୍ୟ ସମୟରେ ଆବଶ୍ୟକତା, ବଜାର ଦର ଓ ଟଙ୍କା ମୂଲ୍ୟର କ୍ଷୟ ଓ ବୃଦ୍ଧି ହିସାବକୁ ନିଆଯାଏ । ଏହି କାରଣ ତ୍ରୟର ଦୁଇଟି ଅବସ୍ଥା ନିଶ୍ଚିତ ଅଛି । ଗୋଟିଏ ସ୍ଥିତାବସ୍ଥା ଓ ଅନ୍ୟଟି ଗତିଶୀଳ । ସ୍ଥିତାବସ୍ଥାକୁ ନେଇ ମଜୁରି ନିର୍ଦ୍ଧାରଣ ହୁଏ । ଗତିଶୀଳତାକୁ ନେଇ ଏହା ପୁନଃନିର୍ଦ୍ଧାରଣ (Revision) ହୋଇଥାଏ । ଭାରତୀୟ ସଂବିଧାନମତେ ଏକ ସୁସ୍ଥ ଜୀବନ ନିମନ୍ତେ ଆବଶ୍ୟକ ଦିଗଗୁଡ଼ିକୁ ହିସାବ କରାଯିବା ଦରକାର ।

ମଜୁରୀର ପ୍ରଥମ ଅବସ୍ଥାଟି ବିଚାର କଲାବେଳେ ୧୯୫୭ର ୧୪ତମ ଶ୍ରମ ସମ୍ମିଳନୀ ଦ୍ୱାରା ସ୍ଥିରୀକୃତ ମାପକ ବା ଆନ୍ତର୍ଜାତୀୟ ଶ୍ରମ ସଙ୍ଗଠନ ଦ୍ୱାରା ସ୍ୱୀକୃତ ମାପକ ନେଇ ନିଷ୍ପତ୍ତି ନିଆଯାଇପାରେ । ମାତ୍ର ପରବର୍ତ୍ତୀ ଅବସ୍ଥା ଅଥଚ ପୁନଃ ନିର୍ଦ୍ଧାରଣ ବେଳେ 'ଉତ୍ପାଦନ'ର ମୂଲ୍ୟ, ଆଞ୍ଚଳିକ ସ୍ତରରେ ପ୍ରଚଳିତ ମଜୁରି ସମଭାବାପର୍ଣ୍ଣ କାରଖାନା ବା ଅନୁଷ୍ଠାନରେ ପ୍ରଚଳିତ ମଜୁରି ବା ଦରମା, ଟଙ୍କାର ମୂଲ୍ୟ, ଖାଉଟୀ ମୂଲ୍ୟସୂଚୀ, ପ୍ରତ୍ୟେକ ପଏଣ୍ଟ ପିଛା ଦର ବା ସ୍ତରପିଛା ଦର ଧାର୍ଯ୍ୟ ଆଦି ହିସାବ କରିବାର କଥା । ମଜୁରୀ ବା ଦରମା ନିର୍ଦ୍ଧାରଣ ପ୍ରତ୍ୟେକ ବର୍ଷ ନ ହୋଇଥିବାରୁ ମୂଳ ଦରମା ସହିତ (Basic wage) ବା (Basic Pay) ସହିତ ବାର୍ଷିକ ବର୍ଦ୍ଧିତ ପରିମାଣ (Increament) ମିଶାଯାଏ । ଏହି increament (ବର୍ଦ୍ଧିତ ହାର)ର କାରଣ ବା ଯୁକ୍ତି ହେଉଛି ଦକ୍ଷତା ବୃଦ୍ଧି । ସେଥିପାଇଁ କେତେକ ସମୟପରେ E.B. (ଏଫିସିଏନ୍‌ସି ବାର)ର ଗୋଟିଏ ପଏଣ୍ଟ ଥାଏ । ଏହି ପଏଣ୍ଟରେ ତା'ର ଦକ୍ଷତା ମପାଯାଇ ଅଧିକ ହାରରେ (Increament) ଦିଆଯାଇଥାଏ । ଅସଂଗଠିତ ଶ୍ରମିକ କ୍ଷେତ୍ରରେ ଏହି ଦକ୍ଷତା ଅନ୍ୟ ଭାବେ (Skill high skill) ବର୍ଣ୍ଣନା କରାଯାଏ ।

ଶ୍ରମିକ ସଂଗଠନ ବା ଶ୍ରମିକନେତାମାନେ ନିଜର ଯୁକ୍ତି ଉପସ୍ଥାପନା କଲାବେଳେ ପୂର୍ବୋକ୍ତ ଦିଗଉପରେ ଦୃଷ୍ଟିଦେବା ସହିତ ଦୃଢ଼ତା ପ୍ରଦର୍ଶନ କରିବା ଦରକାର ।

ମଜୁରୀ ବା ଦରମା ବଢ଼ିବା କ୍ଷଣି ସାଧାରଣରେ ଆତଙ୍କ ସୃଷ୍ଟି ହେବାର ଲକ୍ଷ୍ୟ କରାଯାଏ । ବଜାରରେ ଦରଦାମ୍ ବଢ଼ିଗଲେ ଗାଳି ବର୍ଷଣ ହୁଏ କର୍ମଚାରୀ, ମେହନତୀ, ଖଟିଖିଆ ଶ୍ରେଣୀ ଉପରେ । ସତେ ଯେପରି ଦରମା ବା ମଜୁରୀ ଏମାନେ ବଳାତ୍କାର କରି ଛଡ଼ାଇ ନେଲେ ବା ସମାଜରେ ସମସ୍ତ ଆର୍ଥିକ ସଂକଟର କାରଣ ହେଉଛି ଏହି ମଜୁରୀ/ଦରମା ବୃଦ୍ଧି ।

ବହୁ ପୂର୍ବରୁ ପ୍ରଚାର ହୋଇ ସାରିଥାଏ "ସରକାର ଉନ୍ନୟନ ପାଇଁ ସମ୍ବଳ ପାଇବେ କେଉଁଠୁ ? ସବୁତ ଦରମାରେ ଗଲା । ଯୋଜନା ଅଟକେଇ ଭରଣାରେ ବିଳମ୍ବ ଘଟିବା ନିଶ୍ଚିତ । ଶତକଡ଼ା ୬୦ଭାଗ, ୭୦, ୭୫ଭାଗ, ସ୍ଥଳ ବିଶେଷରେ ଅଶିଭାଗ ଦରମା ବାବଦରେ ଚାଲି ଯାଉଛି । ମାତ୍ର କେତେ ଲକ୍ଷ୍ୟ ବା ଶତକଡ଼ା ତିନି ବା ଚାରିଭାଗ ଲୋକଙ୍କ ପାଇଁ ସବୁ ରାଜକୋଷ ଖର୍ଚ୍ଚ ହୋଇଗଲା ।"

ସାଧାରଣରେ ମଧ୍ୟ ଏହି ଧାରଣା ଜମାଟ ବାନ୍ଧେ । କେହି କ'ଣ ଜାଣେ ଯେ 'କୁକୁଡ଼ା ଆଗ ନା' ଅଣ୍ଡା ଆଗ' ସମସ୍ୟା ସମାଧାନର ସୂତ୍ରଟି ? ଆଗ ବଜାର ବଢ଼େ ନା ଆଗ ମହଙ୍ଗା ଭତ୍ତା ବା ମଜୁରି/ଦରମା ବଢ଼େ ? କ'ଣ ଏହାର କାରଣ ? ? କିଏ ଏହାର କର୍ତ୍ତା ? ? ? ଚୋର ଡାକ ପକାଉଛି 'ଚୋର ଗଲା' 'ଚୋର ଗଲା' । ଏପରିକି ନିଜେ ଶ୍ରମିକ କର୍ମଚାରୀ ମଧ୍ୟ ବେଳେବେଳେ ପ୍ରଚାରର ଗୋଲକ ଧନ୍ଦା ମଧ୍ୟରେ ଛନ୍ଦିହୋଇ ଯାଇ ନିଜକୁ ଦୋଷୀ ମଣେ । ସମସ୍ତେ 'ହୋ' ପଟରେ ମାତି ଯାଆନ୍ତି ।

ଯଦି ସରକାରୀ କାରଖାନା ବନ୍ଦ ହୋଇଗଲା, ରୁଗ୍ଣ ହୋଇଗଲା ବା ସରକାରୀ ଶିଳ୍ପ ଉଦ୍ୟୋଗ ଲଗାତର ଲୋକାସନରେ ଚାଲିଛି ତେବେ ଶ୍ରମିକ ଅଶାନ୍ତି ଅଯଥା ମଜୁରି ଦାବୀ ଏହାର କାରଣ ହୋଇ ଉଠେ । ନିଗମ ବା ସରକାରୀ ଶିଳ୍ପ ସଂସ୍ଥା ବେସରକାରୀ ହାତକୁ ଟେକି ଦେବାର ଧମକ ସୃଷ୍ଟି ହୁଏ । ସେହି ମଜୁରୀ ସେହି ଶ୍ରମଦାନରେ ବ୍ୟକ୍ତିଗତ ମାଲିକାନା ହାତକୁ ଯାଇଥିବା କାରଖାନା ପୁଣି ମୁଣ୍ଡ ଟେକି ଚାଲିଲା କିପରି ? ଦକ୍ଷ ବ୍ୟକ୍ତିଗତ ମାଲିକାନା ପରିଚାଳନାରେ ଥିବା କାରଖାନା ସବୁ ଦୁର୍ବଳ, ରୁଗ୍ଣ ହେଉଛି ବା କାହିଁକି ? ଶହ ଶହ କାରଖାନା ବନ୍ଦମୂଳର କାରଣ କ'ଣ ? ଉତ୍ପାଦନ ବୃଦ୍ଧିର ବା ହ୍ରାସର କାରଣ କ'ଣ କେବଳ ଶ୍ରମିକ କର୍ମଚାରୀ ଅଥବା ଅନ୍ୟ କାରଣ ସମୂହ (Factors) । ତାହା ନିର୍ଣ୍ଣୟ ନକରି ଶ୍ରମିକଶ୍ରେଣୀ ମୁଣ୍ଡରେ ଦୋଷ ଲଦି ଦେବାର ପ୍ରକ୍ରିୟା ସକ୍ରିୟ ଥାଏ । କଳ କାରଖାନାରେ (Manufacturing Unit) ଉତ୍ପାଦନ ମାତ୍ରା (Producton target ବା dectum) ଧାର୍ଯ୍ୟରେ କ'ଣ ଶ୍ରମିକ କର୍ମଚାରୀ ପ୍ରତିବନ୍ଧକ ? ନା' କର୍ମଚାରୀଙ୍କ ପାଇଁ କାର୍ଯ୍ୟାବଳୀ (Job specification) ନିର୍ଦ୍ଧାରଣକୁ ଅଥବା ସମୟାନୁସାରେ ହେଉ ଆବଶ୍ୟକତା ଅନୁସାରେ ହେଉ ବିଜ୍ଞାନସମ୍ମତ ନିଯୁକ୍ତି (Scientific Man-Power study)ଭିତ୍ତିକୁ କେହି କେବେ ଶ୍ରମିକ ବା ତା'ର ସଂଗଠନ ମନା କରିଅଛି ?

ବେଳେବେଳେ ଯୁକ୍ତି ହୁଏ ମାଲିକର କ୍ଷମତା ନାହିଁ, ଦେବ କିପରି ? ଆଣିବ କେଉଁଠୁ ? ? ମଜୁରି ବା ଦରମା ପାଇଁ ମାଲିକର (ସେ ସରକାରୀ ହେଉ ବା ଘରୋଇ ସଂସ୍ଥା/ବ୍ୟକ୍ତି ହେଉ) ତା'ର ଦେବା କ୍ଷମତା (Paying Capacity) ରହିବା ଦରକାର । ଏହି ଦେୟ ଶକ୍ତିଟି କ'ଣ କେବଳ ମଜୁରୀ ବା ଦରମା ଧାର୍ଯ୍ୟବେଳେ ଆଖିରେ ପଡ଼େ ? ସରକାର ଟିକସ ବା ଶୁଳ୍କ (Tax/duties) ଧାର୍ଯ୍ୟ କଲାବେଳେ ବା ବିଦ୍ୟୁତ୍ ଶକ୍ତିପାଇଁ ଦରଧାର୍ଯ୍ୟ (Electricity Tarif) କଲାବେଳେ ବା କାରଖାନା

ଚଳାଇ ରଖିବା ପାଇଁ ବ୍ୟାଙ୍କ ମାନଙ୍କରୁ ପୁଞ୍ଜି ଯୋଗାଡ଼ ସମୟରେ ସୁଧ ଦେବାବେଳେ ଏହି ଦେବାର କ୍ଷମତା ତ କାରଖାନାରୁ କାରଖାନା ଫରକ ହେବାର ଦେଖାଯାଏ ନାହିଁ ବା (Paying Capacity) କଥାଟି ବିଚାରକୁ ନିଆଯାଏ ନାହିଁ କାହିଁକି ? ଏଠାରେ ଗୋଟିଏ ବଡ଼ ପ୍ରଶ୍ନ ମାଲିକ ଶ୍ରେଣୀ (CEO's) ମାନଙ୍କର ଖର୍ଚ୍ଚଶୈଳୀ ଓ ମୋଟା ଅଙ୍କର ପ୍ରାପ୍ୟକୁ କେହି କ'ଣ କେବେ ଦାୟୀ କରିଛନ୍ତି । ପଣ୍ୟଦ୍ରବ୍ୟ ଭାବେ ବ୍ୟବହୃତ କୋଇଲା, ବିଦ୍ୟୁତ୍ ଆଦିର ଦରବୃଦ୍ଧି ଓ ଅଙ୍ଗମାନେ ଯୋଗାଉଥିବା ପୁଞ୍ଜିର ମୋଟା ସୁଦ୍ଧ ହାର ଠାରୁ ମଜୁରିଆର ପ୍ରାପ୍ୟ କ'ଣ ଅଧିକ ଥାଏ ?

ଏ ସମସ୍ତ କଥା ବିଚାରକୁ ନେଇ କେହି କେବେ ମନ୍ତବ୍ୟ ଦେବାର ଦେଖାଯାଏ ନାହିଁ । ଅପରନ୍ତୁ ଦରମା ବା ମଜୁରି ବୃଦ୍ଧି ସଙ୍ଗେ ସଙ୍ଗେ ଆତଙ୍କର ବାତାବରଣ ସୃଷ୍ଟି କରାଯାଏ । ଏପରିସ୍ଥଳେ ଶ୍ରମିକ ସଂଗଠନ ଓ ଶ୍ରମିକ ନେତାଗଣଙ୍କର ଦାୟିତ୍ୱ ବଢ଼ିଯାଇଥାଏ । ସମସ୍ତ ଅସଂଗଠିତ ଶ୍ରମିକଙ୍କ ପାଇଁ ନ୍ୟାୟୋଚିତ ମଜୁରି ଓ ପୂର୍ଣ୍ଣ ସାମାଜିକ ନିରାପତ୍ତା ଦେବା ନିମନ୍ତେ ସଂଘବଦ୍ଧ ଆନ୍ଦୋଳନ ପ୍ରସ୍ତୁତ କରିବା ସେମାନଙ୍କର ଦାୟିତ୍ୱ ।

✿✿✿

# ଘରପାଇଁ ସେବା ଓ ଶ୍ରମିକ

ସହରାଞ୍ଚଳରେ ମଧ୍ୟବିତ୍ତ ସ୍ୱଚ୍ଛଳ ବର୍ଗ ସଂଖ୍ୟା ବୃଦ୍ଧି ସହିତ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କର କର୍ମକ୍ଷେତ୍ରରେ ଯୋଗଦାନ ବୃଦ୍ଧି ପାଇବାରେ ଲାଗିଛି ଓ ଅନ୍ୟପକ୍ଷରେ ଯୌଥ ପରିବାର ଦିନକୁ ଦିନ ଭାଙ୍ଗିଯିବା ଓ ସଂକୀର୍ଣ୍ଣ ହେବାରେ ଲାଗିଛି । ଅପରପକ୍ଷରେ ବ୍ୟକ୍ତିର ବଞ୍ଚିବାର ବୟସସୀମା ବୃଦ୍ଧି ଯୋଗୁଁ ବରିଷ୍ଠ ନାଗରିକ ବା ଘରେ ରହୁଥିବା ବୁଢ଼ାବୁଢ଼ୀଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଏମାନଙ୍କ ମଧ୍ୟରୁ ବିଶେଷତଃ ପେନ୍‌ସନ୍ ଭୋଗୀ ଅଭିଭାବକଗଣ ପୁଅଝିଅ ବା ତାଙ୍କ ପରିବାରର ଲୋକେ ବାହାରେ ବିଦେଶରେ ରହୁଥିବାରୁ ପରିଚାରକ, ପରିଚାରିକା ଲୋଡ଼ିଥାନ୍ତି । ଫଳତଃ ଘରମାନଙ୍କରେ ବିଭିନ୍ନ କିସମର ଶ୍ରମଜୀବୀ ସହାୟକ ଓ ସହାୟିକାଙ୍କ ଆବଶ୍ୟକତା ବୃଦ୍ଧି ପାଇବାରେ ଲାଗିଛି । ଏହି ଶ୍ରମିକଶ୍ରେଣୀ ମୁଖ୍ୟତଃ ଘରସଫା, ବାସନମଜା, ରୋଷେଇ, ସିକ୍ୟୁରିଟି, ମାଳି, ଛୋଟପିଲା ପାଳିବା ଆଦି କାର୍ଯ୍ୟପାଇଁ ନିୟୋଜିତ ହୋଇଥାନ୍ତି । ଏତଦ୍‌ବ୍ୟତୀତ ବୟସ୍କ, ବୟସ୍କାମାନଙ୍କୁ ସେବା ସୁଶ୍ରୁଷା ଯୋଗାଇ ଦେବା ନିମନ୍ତେ ନର୍ସ, ଧାଈ ମଧ୍ୟ ଆବଶ୍ୟକ ହୋଇଥାନ୍ତି ।

ଏମାନଙ୍କ ନିଯୁକ୍ତି ମାସିକ ଭିତ୍ତିରେ ବା ସାମୟିକ ଭାବରେ ହୋଇଥାଏ । ସ୍ଥାୟୀ ସହାୟକଟିଏ ଯୋଗାଡ଼ କରିବା କଷ୍ଟକର ବ୍ୟାପାର ଏବଂ ଅନାବଶ୍ୟକ ମନେ ହେବାରୁ ସାମୟୀକ ନିଯୁକ୍ତି ଉପରେ ଗୁରୁତ୍ୱ ଗୃହମାଲିକମାନେ ଦେଇଥାନ୍ତି । ସେବାକାରୀ ଶ୍ରମିକ ଗୋଟିଏ ଦିନ ଅନୁପସ୍ଥିତ ରହିଲେ ଗୃହମାଲିକବର୍ଗ ବିଚଳିତ ବୋଧ କରନ୍ତି । ବସ୍ତି ଅଞ୍ଚଳରୁ ଆସୁଥିବା ବା ନିଜ ଘରର ବର୍ଷାତିରେ ରହୁଥିବା ପୁରୁଷ ବା ସ୍ତ୍ରୀମାନଙ୍କ କାର୍ଯ୍ୟ ଦୈନନ୍ଦିନ ଜୀବନରେ ଅପରିହାର୍ଯ୍ୟ ମନେ ହୁଏ । କିନ୍ତୁ ଏହି ଅସଂଗଠିତ କର୍ମଜୀବୀ ଶ୍ରେଣୀର ସମସ୍ୟା ଯେ ଅନେକ, ଏକଥା କେହି ଉପଲବ୍ଧି କରିବାଭଳି ଜଣାଯାଏ ନାହିଁ ।

ପ୍ରଥମତଃ ଏମାନେ ଦୂର ବସ୍ତିରେ ଥିବା ହେତୁ କର୍ମକ୍ଷେତ୍ରକୁ ଯିବା ଆସିବା ପାଇଁ ଅନେକ ସମୟ ନେଇଥାନ୍ତି । ସେହି ସମୟପାଇଁ ତାଙ୍କର ମଜୁରୀ ବା ଯାତାୟତ ଖର୍ଚ୍ଚ ଧାର୍ଯ୍ୟ ହୋଇ ନଥାଏ । ଦ୍ୱିତୀୟତଃ ଏମାନେ ଏକ ସମୟରେ ଅନେକଗୁଡ଼ିଏ

ଘରକୁ କାମ କରିବାକୁ ଯାଇଥାନ୍ତି । ଅର୍ଥାତ୍ ଘଣ୍ଟିକିଆ ବା ସମୟାନୁସାରେ କାର୍ଯ୍ୟ କରିଥାନ୍ତି । ପାଖାପାଖି କାର୍ଯ୍ୟ ନ ମିଳିଲେ ଅଯଥା ଅନେକ ସମୟ ଅପଚୟ ହୁଏ । ଏମାନଙ୍କର ଅନ୍ୟ ଏକ ବଡ଼ ସମସ୍ୟା ହେଉଛି ମଜୁରିରେ ତାଳମେଳ ନଥାଏ । ସ୍ତ୍ରୀମାନେ କାର୍ଯ୍ୟ କରୁଥିବା ଘରର ଅନେକ ଗୃହସ୍ତଙ୍କ ଲୋଲୁପ ଦୃଷ୍ଟି ସେମାନଙ୍କ ଉପରେ ପଡ଼ିଥାଏ ଏବଂ ସେମାନଙ୍କ ସହିତ କୁକର୍ମ କରିବାର ଅଭିଯୋଗ ଆସିଥାଏ । ଗରିବ ଶ୍ରମିକ-ରମଣି ଏହାର ପ୍ରତିବାଦ କରିବା ସବୁବେଳେ ସଂଭବ ହୋଇ ନଥାଏ । ଏକଥା ମଧ୍ୟ ଘଟୁଛି ଯେ ସଠିକ୍ ପରିଚାରକ, ପରିଚାରୀକା ନିର୍ଣ୍ଣୟ ନ ହେବା ହେତୁ ଅନେକ ମାଲିକଙ୍କ ଘରେ ଅଘଟଣାମାନ ଘଟୁଛି । ଘରର ମାଲିକ ମାଲିକାଣୀଙ୍କୁ ନିର୍ମମଭାବେ ହତ୍ୟା କରାଯାଉ ଥିବାର ସମ୍ବାଦ ପ୍ରକାଶ ପାଇଥାଏ । ଘରୁ ଚୋରୀ ଯାଉଛି । ଏ ଦିଗଟି ପ୍ରତି ଦୃଷ୍ଟି ଦେବାର ଆବଶ୍ୟକତା ଏଡ଼ାଯାଇ ପାରିବ ନାହିଁ । ନିଯୁକ୍ତିଦାତା ବା ଦାତ୍ରୀ ଓ ପରିଚାରକ, ପରିଚାରୀକାଙ୍କ ଭିତରେ ଅବିଶ୍ୱାସର ବାତାବରଣ ବଢ଼ି ଚାଲିଛି । ତଥାପି ସମସ୍ତ କାର୍ଯ୍ୟରତ ପରିଚାରକ ବା ପରିଚାରୀକା ଏପରି ଅବିଶ୍ୱାସର ପାତ୍ରପାତ୍ରୀ ନୁହଁନ୍ତି । ଆବଶ୍ୟକତା ଦୃଷ୍ଟିରୁ ଏହିସବୁ ସେବାକାରୀ ଅସଂଗଠିତ କର୍ମଜୀବୀ ମହିଳା ଓ ପୁରୁଷମାନଙ୍କୁ ସଠିକ୍ ଭାବେ ଚିହ୍ନଟ କରାଯାଇ ତାଙ୍କୁ ଚିହ୍ନଟ ପତ୍ର ଦେବା ଓ ନିଯୁକ୍ତିଦାତାଙ୍କ ପାଖରେ ଉତ୍ତରଦାୟୀ କରିବାର ବ୍ୟବସ୍ଥାଟି ଦରକାର ।

କେରଳ ରାଜ୍ୟର ସହରମାନଙ୍କରେ ସଂସ୍ଥାମାନ ଗଠିତ ହୋଇ ବିଭିନ୍ନ ବର୍ଗର କୁଶଳୀ ସେବକ ଓ ଶ୍ରମିକ ଯୋଗାଣର ବ୍ୟବସ୍ଥା କରିଛନ୍ତି । ସେମାନେ ଟେଲିଫୋନ୍ ଓ ଅନ୍‌ଲାଇନ୍‌ରେ ଆବଶ୍ୟକତା ମୁତାବକ ଯୋଗ୍ୟ ପୁରୁଷ ବା ସ୍ତ୍ରୀଲୋକ ନିଯୁକ୍ତି ଦେଇଥାନ୍ତି । ସେଥିପାଇଁ ଅନେକ ସର୍ତ୍ତ ଓ ନିୟମାବଳୀ ଥିବାର ଦେଖା ଯାଇଥାଏ । ଏହି ସଂସ୍ଥାମାନେ ମଧ୍ୟ ନିଜର ପ୍ରାପ୍ୟଧାର୍ଯ୍ୟ କରି ଆଦାୟ କରିଥାନ୍ତି ଓ ଗୋଟିଏ ସ୍ଥାନରୁ ଶ୍ରମଜୀବୀ ସେବକ – ସେବିକାମାନଙ୍କୁ ନେଇ ନିଯୁକ୍ତି କ୍ଷେତ୍ରରେ ଛାଡ଼ିଥାନ୍ତି ଓ ନେଇ ଆସିଥାନ୍ତି । ଏମାନେ ଦିନିକିଆ ବା ସାମୟିକ ଡ୍ରାଇଭର ବା ଚିକିତ୍ସା ସେବା ଯୋଗାଇଦେବାର ବ୍ୟବସ୍ଥା ମଧ୍ୟ କରିଥାନ୍ତି । ଏପରି ଉତ୍ତମ ବ୍ୟବସ୍ଥା କେରଳର ସହରରେ କେବଳ ନୁହେଁ ଗାଁ ଗହଳିରେ ସୃଷ୍ଟି ହୋଇଛି । ଦେଶର ଅନେକ ସହର ଏପରିକି ଓଡ଼ିଶାର ସହରମାନଙ୍କରେ ସିକ୍ୟୁରିଟି ଗାର୍ଡ଼ ନିଯୁକ୍ତି ଗୋଟିଏ ଗୋଟିଏ ନିଯୁକ୍ତିକାରୀ ସଂସ୍ଥା ମାଧ୍ୟମରେ ହେବା ଆରମ୍ଭ ହୋଇଛି ।

ଦିନକୁ ଦିନ ପରିସର ବୃଦ୍ଧି ପାଇବାରେ ଲାଗିଛି । ଦକ୍ଷ, ସୁସ୍ଥ, ସବଳ, ପରିଷ୍କାର, ପରିଚ୍ଛନ୍ନ ଏପରିକି ସଂସ୍ଥାର ପ୍ରଦତ୍ତ ଚିହ୍ନଟପତ୍ର ତଥା ୟୁନିଫର୍ମ ପରିଧାନ କରି ସମସ୍ତ ସେବା-ସହାୟକ କର୍ମକ୍ଷେତ୍ରକୁ ଯିବା ଦରକାର । ଫଳତଃ, ମଧ୍ୟମ ସ୍ୱଚ୍ଛଳବର୍ଗ ଏଥିପାଇଁ ନିର୍ଦ୍ଧାରିତ ପାଉଣା ବା ମଜୁରୀ ବା ମୂଲ ଦେବାକୁ କୁଣ୍ଠା କରିବେ ନାହିଁ । ମନମୁତାବକ ସେବା ମିଳିବ, ବିଶ୍ୱାସର ସହ କାର୍ଯ୍ୟହେବ, ସେମାନଙ୍କ ଉପରେ ଦୃଷ୍ଟି ରଖିବାପାଇଁ ନିଯୁକ୍ତିକାରୀ ସଂସ୍ଥା ଅଛି ଏଣୁ ସବୁ ସ୍ୱଚ୍ଛଳବର୍ଗର ମଧ୍ୟମ, ଉଚ୍ଚମଧ୍ୟମ ଶ୍ରେଣୀର ପରିବାର ଏହି ବ୍ୟବସ୍ଥାକୁ ସହଜରେ ଆପଣେଇ ନେବାରେ କୁଣ୍ଠା କରିବେ ନାହିଁ । ଏତଦ୍‌ବ୍ୟତୀତ ଏହି ପରିଚାରୀକା ବା ପରିଚାରକମାନଙ୍କୁ ଅନେକ ବିପଦମୁକ୍ତ ସରଞ୍ଜାମ (Safty Materials) ଯୋଗାଇଦେଲେ କାର୍ଯ୍ୟଜନିତ ରୋଗରୁ ସେମାନେ ମୁକ୍ତ ରହିବା ସଂଗେ ସଂଗେ ଘରର ପିଲାଛୁଆ ଆଦି ନିରାପଦ ରହିବେ । ଏହିସବୁ ବ୍ୟବସ୍ଥା ନିଯୁକ୍ତିକାରୀ ଗୃହମାଲିକଙ୍କ ଅପେକ୍ଷା ଏମାନଙ୍କୁ ଯୋଗାଡ଼ କରୁଥିବା ସଂସ୍ଥା ଉପରେ ନ୍ୟସ୍ତ ରହିଲେ, ଅନେକ ଭାବେ ବ୍ୟୟଭାର ଲାଘବ ହେବା ସହିତ ପରିଚାଳନା ସହଜ ଓ ସୁବିଧାଜନକ ହେବ ।

ଖଟୁଥିବା ସେହି ପୁରୁଷ ବା ସ୍ତ୍ରୀଲୋକଙ୍କର ଅନ୍ୟଏକ ନିରାପତ୍ତା ନାହିଁ । ତା' ହେଉଛି ନିରନ୍ତର ନିଯୁକ୍ତି ବ୍ୟବସ୍ଥା ସଂସ୍ଥା ଯେତେବେଳେ ଇଚ୍ଛା ସେତେବେଳେ ଫେରାଇ ଦେବାର ଆଶଙ୍କା ଅଛି । ସେଥିପାଇଁ ସେମାନଙ୍କର ଦିନଟିଏ ବେରୋଜଗାରରେ କଟିବାକୁ ହୋଇଥାଏ । ଏଥିପାଇଁ ଅନ୍ତତଃ ଗୋଟିଏ ହାଜିରା ଅର୍ଥ (Attendance Money) ର ବ୍ୟବସ୍ଥା ହେବା ଦରକାର । ଏହା ମୂଳ ଦୈନିକ ମଜୁରିର ଅର୍ଦ୍ଧେକ ହେବା ଦରକାର । ଏ କ୍ଷେତ୍ରରେ ଯେଉଁ ବ୍ୟକ୍ତିବିଶେଷ ରୋଜଗାର ହରାଇବାକୁ ବାଧ ହୋଇଥାଏ, ଅନ୍ତତଃପକ୍ଷେ ସେଦିନପାଇଁ ଭୋକିଲା ରହେନାହିଁ । ଏଥିରେ ଅନେକ ଅର୍ଦ୍ଧକୁଶଳୀ - କୁଶଳୀ ଶ୍ରମିକଙ୍କୁ ନିଯୁକ୍ତି ମିଳିବାର ବ୍ୟବସ୍ଥା ରହିଛି । ରାଜ୍ୟ ସରକାରମାନେ ଏହି ଘରୋଇ ସେବାକାରୀ - ଶ୍ରମଭିତ୍ତିକ ନିଯୁକ୍ତି (Domestic Servant) ପାଇଁ ଆଇନ ପ୍ରଣୟନ କରିବା ସହ ସେମାନଙ୍କୁ ବିଭିନ୍ନ ନିରାପତ୍ତାଦେବାର ଯୋଜନାକରିବା ଅତ୍ୟନ୍ତ ଜରୁରୀ ।

ସାମନ୍ତବାଦୀ ବ୍ୟବସ୍ଥାରେ ଥିବା ଦାସ-ସେବକ ଅବସ୍ଥାର ପରିବର୍ତ୍ତନ ନିଶ୍ଚୟ ଘଟିଛି । ତେବେ ସାଂପ୍ରତିକ ସ୍ଥିତିରେ ଶ୍ରମଦାନକାରୀ - ସେବକମାନଙ୍କ ମାନବିକ ଅଧିକାର ଉଲ୍ଲଂଘନ ମଧ୍ୟ ପୂର୍ବଭଳି ଘଟି ଚାଲିଛି । ସେମାନଙ୍କୁ ଉତ୍ତମ ମଜୁରି,

ମାନବିକ ମର୍ଯ୍ୟଦା ଓ ସ୍ୱାସ୍ଥ୍ୟ ତଥା ଅବସରକାଳୀନ ନିରାପତ୍ତା ପ୍ରଦାନର ବ୍ୟବସ୍ଥା କରାଯିବା ଦରକାର । ଘରୋଇ କ୍ଷେତ୍ରରେ ଏହି କର୍ମ-ସେବା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଜଣେ ନିଯୁକ୍ତିଦାତା ସେବା ଲୋଡୁଛି । ଅନ୍ୟଟି ହେଉଛି ସେବା ଓ ଶ୍ରମ ପ୍ରଦାନକରି ଅର୍ଜନ ବା ରୋଜଗାର ଅପେକ୍ଷାରେ ଥାଏ । ଉଭୟ ଉଭୟଙ୍କର ଆବଶ୍ୟକ । ଏହାକୁ ଦୃଷ୍ଟିରେ ରଖି ଆଇନ ଓ ବ୍ୟବସ୍ଥାକୁ ସଜାଡ଼ିବା ଦରକାର ।

ନିଯୁକ୍ତି ପ୍ରଦାନକାରୀ ମାଧ୍ୟମଗୁଡ଼ିକ ପ୍ରସ୍ତୁତ ହେବାବେଳେ ମୁଖ୍ୟ ନିଯୁକ୍ତିକାରୀ (Principal Employer) ଭାବେ ଚିହ୍ନିତ ହୋଇଥାଏ । ଯେଉଁ ଘରେ କାର୍ଯ୍ୟ ମିଳିଥାଏ ସେ ଗୃହକର୍ତ୍ତା ପ୍ରତ୍ୟକ୍ଷ ନିଯୁକ୍ତିକାରୀ (Immediate Employer) ବୋଲି ବିବେଚିତ ହୋଇଥାନ୍ତି । ଆଇନ୍ ସୁରକ୍ଷା ଦେବା ଦାୟିତ୍ୱରେ ରହି ଶ୍ରମ ନିରିକ୍ଷକ (Labour Inispector)ଙ୍କ ଜରିଆରେ ସମସ୍ତ ବ୍ୟବସ୍ଥା ଯାଞ୍ଚ କରିବା ଲାଗୁ ହେଲେ ଘରୋଇ ସେବା-ଶ୍ରମିକଙ୍କର ଦୁର୍ବଳ ସ୍ଥିତି ସୁଧୁରି ଯାଇପାରିବ । ଅସଂଗଠିତ ଶ୍ରମିକ ବର୍ଗର ଏକ ମୁଖ୍ୟ ଅଂଶ ଘରୋଇ ସେବା ଶ୍ରମିକର ସମସ୍ୟା ଉପରେ ଗୁରୁତ୍ୱ ଦେବାର କଥା ସର୍ବତ୍ର ଉପଲବ୍ଧ ହୁଏ ।



# ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ

ଓଡ଼ିଆ ଜାତୀର ଭାଷା, ସାହିତ୍ୟ, ରାଜନୀତି ଓ ଅର୍ଥନୀତି -ସଂବଧିତ ପୁସ୍ତକ

୧. ଆମ ରାଜ୍ୟ ଆମ ସମସ୍ୟା - ପ୍ରଥମ ଖଣ୍ଡ

୨. ଆମ ରାଜ୍ୟ ଆମ ସମସ୍ୟା - ଦ୍ୱିତୀୟ ଖଣ୍ଡ

ଦାରିଦ୍ର୍ୟ ଦୂରୀକରଣର ବିଶ୍ଳେଷଣ

୩. ହଁ ଏକ କୌଶଳ

ପ୍ରବନ୍ଧ ୪. ଦଶନ୍ଧିର ନାଟକ

ପ୍ରବନ୍ଧ ୫. ପ୍ରବଚନ

ପ୍ରବନ୍ଧ ୬. ସଂସ୍କୃତି ବିଭବ

ଗଳ୍ପ ୭. ମୁହୂର୍ତ୍ତର ଅନୁଚିନ୍ତା

୮. ଅଶରୀର

୯. ପୁନଶ୍ଚ

୧୦. ଅସ୍ତରାଗ

୧୧. ପୁନର୍ଜନ୍ମ

୧୨. ଅନ୍ୟ ଏକ ରେବତୀ

(କୋଡ଼ିଏ ଟଙ୍କିଆ ସିରିଜ)(ମନ୍ଥନ ମାଳା)

୧୩. (କ) ଶିକ୍ଷା ଶିକ୍ଷାର୍ଥୀ ଶିକ୍ଷକ ଶିକ୍ଷାୟତନ

(ଖ) କଳାଟଙ୍କା ଓ ନିର୍ବାଚନ

(ଗ) ବିଦ୍ୟୁତ୍ ଶକ୍ତି ଓ ଉପଭୋକ୍ତା

(ଘ) ଜଳ ସଂକଟ

(ଙ) ମଜୁରୀ

ଭିଜନ୍ ଓଡ଼ିଶା :

୧୪. (କ) ସ୍ୱରାଜ ପଥେ

(ଖ) ସ୍ମାର୍ଟ - ସ୍ଟାର୍ଟ ଅପ୍ - ଷ୍ଟାଣ୍ଡ୍ ଅପ୍ ଓ ଅନ୍ୟାନ୍ୟ

ନାଟକ - ୧୫. ଯୁଗ ସନ୍ଧିକ୍ଷଣର ଶେଷ ଶିଳ୍ପୀ

ରମ୍ୟରଚନା- ୧୬. ସାମାନ୍ୟ କଥନ ଓ ଅନେକ ଦିଗନ୍ତ

ଉପନ୍ୟାସ- ୧୭. ରଜି





## ସଂକ୍ଷେପରେ

ସ୍ତମ୍ଭକାର ଭାବେ ପଞ୍ଚାନନ କାନୁନ୍‌ଗୋ ଏକ ନିଆରା ପରିଚୟ ସୃଷ୍ଟି କରିଛନ୍ତି । କବିତା, ଗଳ୍ପ, ପ୍ରବନ୍ଧ, ଉପନ୍ୟାସ ନାଟକ ରଚନା କରିଛନ୍ତି ଓ କରିଚାଲିଛନ୍ତି । ରାଜନୀତି ଓ ବିଭିନ୍ନ ଆନ୍ଦୋଳନରେ ଛାତ୍ର ଅବସ୍ଥାରୁ ଜଡ଼ିତ ରହି ମଧ୍ୟ ଓଡ଼ିଆ ଭାଷା, ସାହିତ୍ୟ ସଂସ୍କୃତି ଓ ଇତିହାସର ଜଣେ ନିରବଚ୍ଛିନ୍ନ ଗବେଷକ ଭାବେ ତାଙ୍କର ଏକ ଭିନ୍ନ ପରିଚୟ ସୃଷ୍ଟି ହୋଇଛି । ଅର୍ଥନୀତିର ତଥ୍ୟ ଓ ତତ୍ତ୍ୱର ନିରନ୍ତର ଗବେଷକ । ଗବେଷଣା କେନ୍ଦ୍ର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍‌ସ ଆଣ୍ଡ୍ ପଲିସି, ପ୍ରତିଷ୍ଠା କରିଛନ୍ତି । ଅନେକ ଗବେଷଣାତ୍ମକ ପୁସ୍ତକ 'ଆମ ରାଜ୍ୟ ଆମ ସମସ୍ୟା'(ଦୁଇଖଣ୍ଡ), 'ହଁ ଏକ କୌଶଳ', 'ଦଶନ୍ଧିର ନାଟକ' ପାଠକାଦୃତ ହୋଇଛି । ସାହିତ୍ୟ କ୍ଷେତ୍ରରେ ଗଳ୍ପ ସଂକଳନ 'ମୁହୂର୍ତ୍ତର ଅନୁଚିନ୍ତା', 'ପୁନଶ୍ଚ', 'ପୁନର୍ଜନ୍ମ', 'ଅଶରୀର', 'ଅସ୍ତରାଗ', ଉପନ୍ୟାସ - 'ରକ୍ତି', ପ୍ରବନ୍ଧ - 'ପ୍ରବଚନ', ସଂସ୍କୃତି ବିଭବ ପ୍ରକାଶ ପାଇଛି । ମନ୍ଥନ ମାଳାର ତୃତୀୟ ଖଣ୍ଡ ହେଉଛି ଶିକ୍ଷା, 'ଶିକ୍ଷାର୍ଥୀ', 'ଶିକ୍ଷକ ଓ ଶିକ୍ଷାୟତନ', ମନ୍ଥନ ମାଳାର ଚତୁର୍ଥ ଖଣ୍ଡ ହେଉଛି 'କଳାଟଙ୍କା ଓ ନିର୍ବାଚନ' ପ୍ରକାଶ ପାଇସାରିଛି । ସେହି ସିରିଜ୍‌ର 'ଶ୍ରମିକ' ହେଉଛି ପଞ୍ଚମ ଅର୍ପଣ ।

-ପ୍ରକାଶନ ସଂସ୍ଥା




ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍‌ସ ଆଣ୍ଡ୍ ପଲିସି
ମଧୁସୂଦନ ନଗର, ୟୁନିଟ୍-୪, ଭୁବନେଶ୍ୱର
ମୋ. ୦୬୭୪-୨୫୦୬୭୮୪, ୯୪୩୮୩୬୦୮୪୯

୨୦ଟଙ୍କା



Twenty Rupees Series